# ଶମ୍ଭୁକ୍ଷେତ୍ର କପିଳାସ

## ଓ

# ଶ୍ରୀଧର ସ୍ୱାମୀ



ଶ୍ରୀ ଚନ୍ଦ୍ରଶେଖରଙ୍କ ମନ୍ଦିର


ଶ୍ରୀ ଗୌରେନ୍ଦ୍ର ପ୍ରତାପ ସିଂହଦେବ

କବିଭୂଷଣ ଶ୍ରୀ ବ୍ରଜକିଶୋର ପଟ୍ଟନାୟକ

ଶ୍ରୀ ଶ୍ରୀଶେଶ ପ୍ରତାପ ସିଂହଦେବ, ବି. ଏ., ବି. ଏଲ୍.

# ଶମ୍ଭୁ-କ୍ଷେତ୍ର କପିଳାସ
# ଓ
# ଶ୍ରୀଧର ସ୍ୱାମୀ

ହରଜଟା ଭେଦି ଯହିଁ ସୁର-ନଦୀ ନିତି ବହି
ସେ କପିଳାସ କୋଳଁ ସେ ଧୀରେ ଓହ୍ଲାଇ
ସପ୍ତଶଯ୍ୟା ଅନ୍ୟ ଦିଶେ ଝରାଇ ପୀୟୂଷ କି ସେ
ଧୂଅନ୍ତି ଯା ଫୁଲ-ମକରନ୍ଦ ମିଶାଇ
ସେ ଜନ୍ମଭୂମି ଢେଙ୍କାନାଳ,
ଶ୍ରୀଚରଣ ତଳେ କୋଟି କୋଟି ଜୁହାର ।

—୬ ପଣ୍ଡିତ ଶିଖରେଶ୍ୱର ମିଶ୍ର
କାବ୍ୟତୀର୍ଥ, ବିଦ୍ୟାଶାସ୍ତ୍ରୀ (ବାରାଣସୀ)

ଶ୍ରୀ ଗୌରେନ୍ଦ୍ର ପ୍ରତାପ ସିଂହଦେବ
କବିଭୂଷଣ ଶ୍ରୀ ରାଜକିଶୋର ପଟ୍ଟନାୟକ
ଶ୍ରୀ ଶ୍ରୀଶେଶ ପ୍ରତାପ ସିଂହ ଦେବ, ବି. ଏ., ବି. ଏଲ୍.

ପ୍ରକାଶିକା :

**ଶ୍ରୀମତୀ ପ୍ରଭାବତୀ କୁମାରୀ ଦେବୀ**

ପ୍ରଥମ ସଂସ୍କରଣ : ୧୦୦୦

ଶିବରାତ୍ରି : ୧୯୮୦

ପ୍ରାପ୍ତିସ୍ଥାନ :

**ଦାଶରଥି ପୁସ୍ତକାଳୟ**

ବାଲୁବଜାର, କଟକ-୨

ମୁଦ୍ରାକର :

**ଶ୍ରୀ ଅରକ୍ଷିତ ଦାସ**

**ଦାଶରଥି ପ୍ରେସ୍,**

ବାଲୁବଜାର, କଟକ—୨

**ମୂଲ୍ୟ : ଟ ୫-୫୦**

# ମୁଖବନ୍ଧ

ଢେଙ୍କାନାଳ ଅନ୍ତର୍ଗତ କପିଳାସ ପର୍ବତରେ ଶ୍ରୀ ଚନ୍ଦ୍ରଶେଖରଙ୍କ ଅନୁଷ୍ଠାନ ହେତୁ ଏହା ସମଗ୍ର ଉତ୍କଳରେ ଗୋଟିଏ ପବିତ୍ର ତୀର୍ଥ ରୂପେ ସୁପରିଚିତ । ବହୁ ପୂର୍ବକାଳରୁ ଏହା ଶମ୍ଭୁକ୍ଷେତ୍ର ରୂପରେ ଓଡ଼ିଶାର ଗଜପତି ମହାରାଜାମାନଙ୍କଦ୍ୱାରା ଆଦୃତ ହୋଇଥିଲା । ପରେ ଏହା ଢେଙ୍କାନାଳର ରାଜାମାନଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନକୁ ଆସିଥିଲା । ଚନ୍ଦ୍ରଶେଖରଙ୍କ ମନ୍ଦିରଟି ଖ୍ରୀଷ୍ଟୀୟ ଚତୁର୍ଦ୍ଦଶ ଶତାବ୍ଦୀରେ ନିର୍ମିତ ହେବାର ପ୍ରମାଣ ମିଳିଅଛି । ଅଧୁନା ଏହା ରାଜ୍ୟ ସରକାରଙ୍କ ଅଧୀନ ଏନ୍‌ଡାଉମେଣ୍ଟ କମିଶନରଙ୍କ ଦ୍ୱାରା ପରିଚାଳିତ ହେଉଅଛି । ଏହା ଯେପରି ଏକ ପୁଣ୍ୟପୀଠ, ସେହିପରି ଅତ୍ୟନ୍ତ ସ୍ୱାସ୍ଥ୍ୟକର ସ୍ଥଳୀ । ଏହାର ପ୍ରାକୃତିକ ବୈଭବ କାଳେ କାଳେ ବହୁ ମୁନି ଋଷି ଓ କବିମାନଙ୍କର ଚିତ୍ତାକର୍ଷଣ କରିଅଛି । ରାଜ୍ୟ ସରକାର ଏହାକୁ ଗୋଟିଏ ଟୁରିଷ୍ଟ ସେଣ୍ଟର କରିଅଛନ୍ତି । ଏହି ପୁସ୍ତକଟିରେ କପିଳାସର ଐତିହ୍ୟ ସମ୍ବନ୍ଧରେ ବହୁ ତଥ୍ୟ ପ୍ରକାଶ କରାଯାଇ ଅଛି । ବିଶେଷତଃ ଏହି ଶମ୍ଭୁକ୍ଷେତ୍ରରେ ଭାରତ ବିଖ୍ୟାତ ଶ୍ରୀମଦ୍ ଭଗବଦ୍ ଗୀତା ଓ ଭାଗବତାଦିର ସୁପ୍ରସିଦ୍ଧ ଟୀକାକାର ଶ୍ରୀଧର ସ୍ୱାମୀ ଦୀର୍ଘକାଳ ରହି ଶ୍ରୀନୃସିଂହଙ୍କର ଉପାସନା କରିଥିଲେ ଏବଂ ତାଙ୍କର କୃପା ପ୍ରାପ୍ତ ହୋଇ ତାଙ୍କର ଟୀକା ପ୍ରଣୟନ କରିଥିଲେ । ଶ୍ରୀଧର ସ୍ୱାମୀଙ୍କର ଜନ୍ମଭୂମି ଉତ୍କଳ ଓ ସାଧନା କ୍ଷେତ୍ର କପିଳାସ ବୋଲି ଓଡ଼ିଶାର ଜନସାଧାରଣଙ୍କୁ ଅବିଦିତ । ଏହି ପୁସ୍ତକରେ ଉକ୍ତ ମହାପୁରୁଷଙ୍କର ଜୀବନ ଚରିତ ଏବଂ କୃତି ସମ୍ବନ୍ଧରେ ନାନା ସ୍ଥାନରୁ ତଥ୍ୟ ସଂକଳନ କରାଯାଇ ଆଲୋକପାତ କରାଯାଇଛି । ପୁସ୍ତକଟିର 'ଶମ୍ଭୁକ୍ଷେତ୍ର କପିଳାସ ଓ ଶ୍ରୀଧର ସ୍ୱାମୀ' – ନାମକରଣ କରାଯିବାର ଏହାହିଁ କାରଣ ।

ଭାରତର ବିଭିନ୍ନ ପୁଣ୍ୟ ପୀଠରେ ଶ୍ରୀଧର ସ୍ୱାମୀ ସୁପରିଚିତ । ତାଙ୍କର ଶ୍ରୀମଦ୍ ଭାଗବତ ଟୀକା ଏବଂ ବିଷ୍ଣୁପୁରାଣ ଟୀକାମାନ ପାଠକରି ଶ୍ରୀ ଚୈତନ୍ୟ ମହାପ୍ରଭୁ ତାଙ୍କୁ ଗୁରୁ ରୂପେ ସମ୍ମାନ ପ୍ରଦର୍ଶନ କରିଥିଲେ ।

"ଶ୍ରୀଧର ପ୍ରସାଦେ ଆମି ଭାଗବତ ଜାନି"

ଅହଂ ବେତ୍ତି ଶୁକୋ ବେତ୍ତି ବ୍ୟାସୋ ବେତ୍ତି ନ ବେତ୍ତିବା
ଶ୍ରୀଧରଃ ସକଳଂ ବେତ୍ତି ଶ୍ରୀନୃସିଂହ ପ୍ରସାଦତଃ ।

ଏହି ଉକ୍ତି ବହୁ ବିଦ୍ୱାନଙ୍କ ମୁଖରୁ ଶୁଣାଯାଇ ଥାଏ ।

ଶ୍ରୀଧର ସ୍ୱାମୀ କପିଳାସ କ୍ଷେତ୍ରରେ ଯେଉଁଠାରେ ରହୁଥିଲେ ତାହାର ଭଗ୍ନାବଶେଷ ଅଦ୍ୟାପି ପରିଦୃଷ୍ଟ ହୁଏ । ଏହା ସ୍ୱାମୀ ମଠ ନାମରେ ସୁପରିଚିତ ।

"ବାଗୀଶା ଯସ୍ୟ ବଦନେ ମାତା ଯସ୍ୟ ଚ ବକ୍ଷସି
ଯସ୍ୟାସ୍ତେ ହୃଦୟେ ସଂବିତ୍ ଶ୍ରୀ ନୃସିଂହ ମହଂ ଭଜେ ।"

ଏହି ଉକ୍ତିରୁ ଶ୍ରୀଧର ଯେ ଶ୍ରୀ ଲକ୍ଷ୍ମୀନୃସିଂହଙ୍କ ଉପାସନା ଦ୍ୱାରା ସିଦ୍ଧି ଲାଭ କରିଥିଲେ ଏହା ପ୍ରମାଣିତ । ଶ୍ରୀଧରଙ୍କର ୩ଟି ପ୍ରଧାନ ଟୀକା ବ୍ୟତୀତ ତାଙ୍କର ସ୍ୱରଚିତ ଅନେକ ସ୍ତୋତ୍ର ଓ ଭକ୍ତିଗ୍ରନ୍ଥ ଭାରତର ଗ୍ରନ୍ଥାଗାରମାନଙ୍କରେ ସୁରକ୍ଷିତ । ଶ୍ରୀଧର ସ୍ୱାମୀ ଶଙ୍କରାଚାର୍ଯ୍ୟ ପ୍ରବର୍ତ୍ତିତ ଅଦ୍ୱୈତ ପରମ୍ପରାର ଦାୟାଦ ଥିଲେହେଁ ଜ୍ଞାନ ଓ ଭକ୍ତିର ସମନ୍ୱୟ କରି ନିଜର ବଳିଷ୍ଠ ମତବାଦ ପ୍ରକାଶ କରିଅଛନ୍ତି । ଏହି ହେତୁ ସେ ଭାରତର ବିଭିନ୍ନ ଧର୍ମ ସମ୍ପ୍ରଦାୟ ମଧ୍ୟରେ ଆଦରଣୀୟ ହୋଇ ଅଛନ୍ତି ।

ଏପରି ଜଣେ ଉତ୍କଳୀୟ ମହାପୁରୁଷଙ୍କୁ ଅଦ୍ୟାବଧି ବହୁ ଲୋକ ବିଶେଷତଃ ଓଡ଼ିଆମାନେ ମଧ୍ୟ ଜାଣିପାରି ନ ଥିବା ଦୁଃଖର ବିଷୟ । ଏହି ପୁସ୍ତକ ଅଧ୍ୟୟନ କରି ତାଙ୍କ ସଂବନ୍ଧରେ ସମ୍ୟକ୍ ଧାରଣା ଲାଭ କରି ପାରିଲେ ଆମ୍ଭେମାନେ ବିଶେଷ ଶ୍ରମ ସାର୍ଥକ ମନେ କରିବୁଁ । ଏହା ଉତ୍କଳୀୟ ସୁଧୀ ସମାଜ ତଥା ସାହିତ୍ୟକ ଗବେଷକମାନଙ୍କ ପାଇଁ ବିଶେଷ ସହାୟକ ହେବ ବୋଲି ଆଶା କରାଯାଏ ।

ଶ୍ରୀଧର ସ୍ୱାମୀଙ୍କ ସମ୍ବନ୍ଧରେ ବିଭିନ୍ନ କ୍ଷେତ୍ରରୁ ସଂଗୃହୀତ ତଥ୍ୟମାନ ପୁସ୍ତକରେ ଅନ୍ତର୍ଗତ ହୋଇଅଛି ।

ଏହି ପୁସ୍ତକ ସଂକଳନରେ ଯେଉଁମାନଙ୍କର ସାହାଯ୍ୟ ମିଳିଅଛି ସେମାନଙ୍କଠାରେ ଆମ୍ଭେମାନେ କୃତଜ୍ଞ ।

ଢେଙ୍କାନାଳ
ଶିବରାତ୍ରି, ୧୯୮୦

ଶ୍ରୀ ଗୌରେନ୍ଦ୍ର ପ୍ରତାପ ସିଂହ ଦେବ
କବିଭୂଷଣ ଶ୍ରୀ ରାଜକିଶୋର ପଟ୍ଟନାୟକ
ଶ୍ରୀ ଶ୍ରୀଶେଶ ପ୍ରତାପ ସିଂହ ଦେବ

# ଓଁ ନମୋ ଶିବାୟ

ଓଁ ଧ୍ୟାୟେନ୍ନିତ୍ୟଂ ମହେଶଂ ରଜତଗିରିନିଭଂ ଚାରୁଚନ୍ଦ୍ରାବତଂସଂ
ରତ୍ନାକଲ୍ପୋଜ୍ଜ୍ୱଳାଙ୍ଗଂ ପରଶୁମୃଗ ବରାଭୀତି ହସ୍ତଂ ପ୍ରସନ୍ନଂ
ପଦ୍ମାସୀନଂ ସମନ୍ତାତ୍ ସ୍ତୁତମମରଗଣୈ ର୍ବ୍ୟାଘ୍ରକୃତ୍ତିଂ ବସାନଂ
ବିଶ୍ୱାଦ୍ୟଂ ବିଶ୍ୱବୀଜଂ ନିଖିଳ ଭୟହରଂ ପଞ୍ଚବକ୍ତ୍ରଂ ତ୍ରିନେତ୍ରଂ ।

ଯେ ରଜତଗିରି ସଦୃଶ, ଯାହାଙ୍କର ଲଲାଟରେ କମନୀୟ ଚନ୍ଦ୍ରମା ମଣ୍ଡିତ, ଯାହାଙ୍କର ଶରୀର ରତ୍ନାଳଙ୍କାରରେ ସମୁଜ୍ଜ୍ୱଳ, ଯାହାଙ୍କର ଚତୁର୍ଭୁଜରେ କୁଠାର, ମୃଗମୁଦ୍ରା, ବରମୁଦ୍ରା ଓ ଅଭୟମୁଦ୍ରା ସୁଶୋଭିତ, ଯେ ପ୍ରସନ୍ନ ବଦନ ପଦ୍ମାସନରେ ଉପବିଷ୍ଟ ଓ ଚତୁର୍ଦ୍ଦିଗରେ ଦେବଗଣ କର୍ତ୍ତୃକ ସ୍ତୁତ, ଯେ ବ୍ୟାଘ୍ରଚର୍ମ ପରିହିତ, ବିଶ୍ୱର ଆଦିମୂଳ, ବିଶ୍ୱକାରଣ, ଯେ ସର୍ବଭୟ ନାଶକ, ପଞ୍ଚବଦନ, ତ୍ରିନେତ୍ର ଓ ମହେଶ୍ୱର ତାହାଙ୍କୁ ଭକ୍ତିଭରେ ଧ୍ୟାନ କରିବା ବିଧେୟ ।

ରଜତ ଗିରି ସଦୃଶ ଚାରୁଚନ୍ଦ୍ର ଅବତଂସ
ନାନା ରତ୍ନ ଆଭୂଷଣେ ଦୀପ୍ତ ଶ୍ରୀଅଙ୍ଗ
ଚତୁର୍ଭୁଜେ ସୁଶୋଭିତ ପରଶୁ ମୃଗ ସଂଯୁକ୍ତ
ବରାଭୟ ମୁଦ୍ରା କିବା ଶୋଭା ସୁରଙ୍ଗ
ପଦ୍ମାସନେ ସୁଖ ଆସୀନ
ସ୍ତୁତି କରନ୍ତି ଚୌଦିଗେ ଅମରଗଣ ।
ବ୍ୟାଘ୍ରଚର୍ମ ପରିଧାନ ବ୍ରହ୍ମାଣ୍ଡ ଆଦି କାରଣ
ବିଶ୍ୱ-ଆଦିଦେବ ଭବ ଭୀତିନାଶକ
ପଞ୍ଚବଦନ ତ୍ରିନେତ୍ର ମୂରତି ଅତି ବିଚିତ୍ର
ଆଦିଦେବ ମହେଶ୍ୱର ବିଶ୍ୱପାଳକ
ସେହି ବିଭୁ କଞ୍ଜ-ପଦ୍ମରେ,
ଧ୍ୟାନକର ନିରବଧି ଭକତି ଭରେ ।

# କପିଳାସ

ଅଭ୍ରଗର୍ଭ ଗିର          କପିଳାସେ ରଶ୍ମି
ଚନ୍ଦ୍ରୁ ଆସିଲକ ଧାଇଁ ।
×     ×     ×
ସ୍ଫଟିକ ପାବଚ୍ଛ     ପଗଯ୍ୟେ ଯେ ଶୈଳେ
ଶୋଭେ କଳନାଘ ଝର
ରକ୍ତାଶୋକ କୁଞ୍ଜେ     ବିରଜନ୍ମ ଯାର
ମେଖଳେ ଚନ୍ଦ୍ରଶେଖର ।

କବିବର ରାଧାନାଥ

ପ୍ରକୃତି-ରସିକ ପ୍ରଖ୍ୟାତଯଶା କବିବର ରାଧାନାଥ ରାୟଙ୍କ 'ପାର୍ବତୀ' କାବ୍ୟରୁ ଉଦ୍ଧୃତ ଉଲ୍ଲିଖିତ ପଦ ମଧ୍ୟରେ ଶଂସିତ ଅଭ୍ରଗର୍ଭ କପିଳାସ କେଉଁ-ଠାରେ ଓ କେବେ ଶ୍ରୀ ଚନ୍ଦ୍ରଶେଖରଙ୍କ ବିକେସ୍ଥଳ "ରକ୍ତାଶୋକ କୁଞ୍ଜ" ମଧ୍ୟରେ ପ୍ରତିଷ୍ଠିତ ହୋଇଥିଲ ଏବଂ ଏହି କପିଳାସ ଗୋଟିଏ ପୁରାଣ ତୀର୍ଥ ରୂପରେ କେତେକାଳୁ ଖ୍ୟାତି ଲଭ କରିଅଛି, ଏ ବିଷୟରେ ଓଡ଼ିଶାର ଐତିହାସିକମାନେ ବିଶେଷ ଭାବରେ ଆଲୋକପାତ କରି ନାହାନ୍ତି । କବିବର ରାଧାନାଥ ଓଡ଼ିଶାର ତତ୍କାଳୀନ ଶିକ୍ଷାବିଭାଗ ଇନସ୍‌ପେକ୍ଟର ଥିବାବେଳେ ବାରଂବାର ଢେଙ୍କାନାଳ ଆସିଥାନ୍ତି । ସେ ଢେଙ୍କାନାଳ ରାଜ୍ୟାନ୍ତର୍ଗତ କପିଳାସ କ୍ଷେତ୍ରର ମହାତ୍ମ୍ୟ ଅବଗତ ହୋଇ ଶ୍ରୀ ଚନ୍ଦ୍ରଶେଖରଙ୍କୁ ଦର୍ଶନ କରିଥିଲେ ଏବଂ ତାଙ୍କର କାବ୍ୟମାନଙ୍କରେ ବିଭିନ୍ନ ସ୍ଥଳରେ କପିଳାସର ନାମୋଲ୍ଲେଖ ମାତ୍ର କରିଥିଲେ । ଏ ବିଷୟରେ ସେ କୌଣସି କାବ୍ୟ କବିତା ସ୍ୱତନ୍ତ୍ର ଭାବରେ ଲେଖି ନ ଥିଲେ । ମାତ୍ର ସୁପରିଚିତ କପିଳ-ସଂହିତାରେ କପିଳାସ-କ୍ଷେତ୍ରର ମହାତ୍ମ୍ୟ ବିଶେଷ ଭାବରେ ବର୍ଣ୍ଣିତ ହୋଇଅଛି ଏବଂ ତାହାକୁ ମୂଳଭିତ୍ତି କରି ଢେଙ୍କାନାଳ ଇତିହାସ ପ୍ରଣେତା ସ୍ୱର୍ଗୀୟ ଭକ୍ତବିନୋଦ ରାମଚନ୍ଦ୍ର ନନ୍ଦ କପିଳାସର ବର୍ଣ୍ଣନା କରିଯାଇଛନ୍ତି ।

ଢେଙ୍କାନାଳ ଜିଲ୍ଲାର ସଦର ସବ୍‌ଡିଭିଜନରେ କପିଳାସ ଗୋଟିଏ ବିଶାଳ ଶୈଳଶ୍ରେଣୀ । ଢେଙ୍କାନାଳ ଟାଉନ ଠାରୁ ଏହାର ଦୂରତା ପ୍ରାୟ ୨୦

କିଲୋମିଟର । ଏହି ଶୈଳମାଳାର ଏକାଂଶରେ ଶ୍ରୀ ଚନ୍ଦ୍ରଶେଖରଙ୍କ ଅଧିଷ୍ଠାନ ହେତୁ କପିଳାସ ବହୁ ପ୍ରାଚୀନ କାଳରୁ ଉତ୍କଳର ଗୋଟିଏ ପୁଣ୍ୟତୀର୍ଥ ରୂପେ ପରିଗଣିତ ହୋଇ ଆସୁଅଛି । ଏଠାରେ ସୁପ୍ରସିଦ୍ଧ "ଜାଗର ଯାତ୍ରା" ଦେଖିବାକୁ ନାନା ସ୍ଥାନରୁ ଅନେକ ଯାତ୍ରୀ ପ୍ରତିବର୍ଷ ଆସନ୍ତି । ଏହାର ଜଳବାୟୁ ବିଶେଷ ସ୍ୱାସ୍ଥ୍ୟପ୍ରଦ ବୋଲି ଗ୍ରୀଷ୍ମକାଳରେ ତଥା ଅନ୍ୟ ସମୟରେ ମଧ୍ୟ ଅନେକ ଲୋକ ଏଠାରେ ମାସାବଧି ଅବସ୍ଥାନ କରି ସ୍ୱଚ୍ଛ ନିର୍ଝରଣୀର ଜଳରେ ସ୍ନାନ, ପାନ ଏବଂ ଶ୍ରୀ ଚନ୍ଦ୍ରଶେଖରଙ୍କ ଦର୍ଶନ କରି ଆପ୍ୟାୟିତ ହୋଇଥାନ୍ତି । କବିବର କପିଳାସକୁ ଅଭ୍ରଗର୍ଭ ବୋଲି ଆଖ୍ୟା ଦେଇ ଅଛନ୍ତି । ଏହାର ଏହି ଅଭ୍ରଗର୍ଭରୁ ନିର୍ଝରର ଜଳକୁ ବିଶେଷ ସ୍ୱାସ୍ଥ୍ୟପ୍ରଦ କରିଅଛି । କପିଳାସରେ ଅଭ୍ର ଥିବାର ପ୍ରକୃତତାତ୍ତ୍ୱିକମାନେ ପ୍ରମାଣ କରିଅଛନ୍ତି ।

ଉତ୍କଳର ଉଚ୍ଚତମ ପର୍ବତମାନଙ୍କ ମଧ୍ୟରେ କପିଳାସ ଅନ୍ୟତମ । ଏହାର ଉଚ୍ଚତା ସମୁଦ୍ର ପତନଠାରୁ ପ୍ରାୟ ୨୩୦୦ ଫୁଟ । ଢେଙ୍କାନାଳ ସହର ଠାରୁ ପୂର୍ବ ଦିଗରେ ଗୋଟିଏ ପକ୍କା ସଡ଼କ ମନ୍ଦାର ଗ୍ରାମ ପର୍ଯ୍ୟନ୍ତ ଯାଇଅଛି । ଏହି ସଡ଼କ ପଥରେ ଢେଙ୍କାନାଳ ଗଡଠାରୁ ପ୍ରାୟ ୨୦ କିଲୋମିଟର ଅତିକ୍ରମ କଲେ କପିଳାସ ପର୍ବତର ପାଦ ଦେଶରେ ପହଞ୍ଚିବାକୁ ହୁଏ । ଏହି ରାସ୍ତାରେ ଦେଓଗାଁ (ଦେବଗ୍ରାମ) ଅବସ୍ଥିତ । ଶ୍ରୀ ଚନ୍ଦ୍ରଶେଖରଙ୍କର ସରଘର (ଭଣ୍ଡାର) ଏଠାରେ ଅଛି । ଏଠାରେ ମଧ୍ୟ ଗୋଟିଏ ବିଖ୍ୟାତ ବହୁ ପ୍ରାଚୀନ ଜଗନ୍ନାଥ ମନ୍ଦିର ଏବଂ ଆଧୁନିକ ଧର୍ମଶାଳା ଏବଂ ଡାକବଙ୍ଗଳା ଅଛି । ଜାଗର ଯାତ୍ରା ସମୟରେ ଏଠାରେ ପ୍ରାୟ ୧୦।୧୨ ଦିନ ଧରି ଗୋଟିଏ ବଡ଼ ମେଳା ହୁଏ ଏବଂ ବହୁ ଜନସମାଗମ ଓ କାରବାର ହୁଏ ।

ଦେବଗ୍ରାମ ଠାରୁ କପିଳାସ ପାଦଦେଶ ପର୍ଯ୍ୟନ୍ତ ପ୍ରାୟ ଦୁଇ ମାଇଲ ଚଲାବାଟ । ଏ ବାଟରେ ଜିପ୍ ଓ ମଟରଗାଡ଼ି ଯାଇପାରେ । ବହୁ-ଯାତ୍ରୀମାନେ ଏଠାରେ ଅବତରଣ କରି ଭୋଗସାମଗ୍ରୀ ସଂଗ୍ରହ ପୂର୍ବକ ପାର୍ବତ୍ୟ ପଥ ଅତିକ୍ରମଣ ପାଇଁ ପ୍ରସ୍ତୁତ ହୋଇଥାନ୍ତି । ପର୍ବତ ଉପରେ ଠାକୁରଙ୍କ ପ୍ରସାଦ ବ୍ୟତୀତ ଅନ୍ୟ କିଛି ସାମଗ୍ରୀ ମିଳେ ନାହିଁ । ଏଣୁ ଯାତ୍ରୀମାନଙ୍କୁ କିଛି କିଛି ଭୋଜ୍ୟ ପଦାର୍ଥ ସଂଗ୍ରହ କରି ନେଇ ଯିବାକୁ ହୁଏ ।

ପର୍ବତ ଉପରକୁ ଆରୋହଣ ପାଇଁ ଦୁଇଗୋଟି ପଥ ଅଛି । ଅତି ପୁରାତନ ବନ୍ଧୁର ପଥଟି ଏବେ ପକ୍କା ପାବଚ୍ଛ ଦ୍ୱାରା ନୂତନ ଭାବରେ ସଜ୍ଜିତ ହୋଇଥିବାରୁ ଗମନାଗମନ ପାଇଁ ସୁଗମ ହୋଇଅଛି । ଅନ୍ୟ ପଥଟି ମଟର

ରାସ୍ତା । ଏହା ସ୍ୱଭାବତଃ ସର୍ପାକୃତି-ବକ୍ରିଷ୍ଟ ବନ୍ଧ । ଏହି ରାସ୍ତାଟି ଢେଙ୍କାନାଳର ରାଜା ସୂରପ୍ରତାପଙ୍କ ଦ୍ୱାରା ବିଂଶ ଶତାବ୍ଦିର ପ୍ରଥମ ଦଶକରେ ନିର୍ମିତ ହୋଇଥିଲା । ଏବେ ଏହା ସିଡ଼ିଦ୍ୱାରା ଅଧିକ ସୁଗମ ହୋଇଅଛି । ପୂର୍ବ କାଳରେ ରାଜାମାନେ ସବାରି, ପାଲିଙ୍କିରେ କିମ୍ବା ହାତୀରେ ବସି ପର୍ବତାରୋହଣ କରୁଥିଲେ । ସାଧାରଣ ଯାତ୍ରୀ କିନ୍ତୁ ଏହି ପଥକୁ ଅଧିକ ପସନ୍ଦ ନ କରି ପାବଚ୍ଛ ଆରୋହଣ କରିବାକୁ ଶ୍ରେୟସ୍କର ମନେ କରନ୍ତି । ବକ୍ରାକୃତି ପଥରେ ଗମନା-ଗମନ ଅଧିକ ସମୟ-ସାପେକ୍ଷ । ଏହି ପଥଟି ସିଧା ଶ୍ରୀ ଚନ୍ଦ୍ରଶେଖରଙ୍କ ମନ୍ଦିର ସିଂହଦ୍ୱାର ପର୍ଯ୍ୟନ୍ତ ଯାଇଅଛି ।

ବକ୍ରାକାର ପଥରେ ପର୍ବତାରୋହଣ କଲାବେଳେ ଦୂରରେ ବ୍ରାହ୍ମଣୀ ନଦୀ ଓ ତାହାର ତୀରବର୍ତ୍ତୀ ବିଶାଳ ଭୂଖଣ୍ଡର ଦୃଶ୍ୟ ଅତ୍ୟନ୍ତ ରମଣୀୟ ବୋଧ-ହୁଏ । ଏଣେ ମଧ୍ୟ ପାବଚ୍ଛ ପଥରେ ଯାଉଥିବା ଯାତ୍ରୀମାନଙ୍କର ଗତିବିଧି ମଧ୍ୟେ ମଧ୍ୟେ ଦୃଷ୍ଟିପଥାରୂଢ଼ ହୁଏ । ଅଦୂରରୁ ମନ୍ଦିରର ଘଣ୍ଟିଘଣ୍ଟା ଓ କାହାଳର ଧ୍ୱନି କର୍ଣ୍ଣ କୁହରକୁ ଆମୋଦିତ କରିବା ସଙ୍ଗେ ସଙ୍ଗେ ପ୍ରଭୁଙ୍କ ଦର୍ଶନ ଲାଳସା ଯାତ୍ରୀମାନଙ୍କର ପ୍ରାଣରେ ନବ ନବ ଭାବାବେଶ ସୃଷ୍ଟି କରେ । ଅପେକ୍ଷାକୃତ ଅଧିକ ସମୟସାପେକ୍ଷ ବୋଲି ପଦଯାତ୍ରୀମାନେ ଏହି ପଥକୁ ଉପେକ୍ଷା କରିଥାନ୍ତି । ମାତ୍ର ଏ ପଥ ପାବଚ୍ଛ ଆରୋହଣ ଓ ଅବତରଣ ଜନିତ କଷ୍ଟରୁ ଅବ୍ୟାହତି ଦେଇଥାଏ ।

ପଣ୍ଡିତ ରତ୍ନାକର ଗର୍ଗବଟୁଙ୍କ ଦ୍ୱାରା ପ୍ରକାଶିତ ସଂସ୍କୃତ ଭାଷାରେ ଲିଖିତ କପିଳ ସଂହିତାରେ ଓଡ଼ିଶାର ପ୍ରଧାନ ତୀର୍ଥମାନଙ୍କର ବର୍ଣ୍ଣନା ମଧ୍ୟରେ କପିଳାସର ସ୍ଥାନ ଅତି ଉଚ୍ଚ । ସଂହିତାରେ ଅଛି, ଋଷିପ୍ରବର ଭରଦ୍ୱାଜ ତାଙ୍କ ଆଶ୍ରମରେ ସମାଗତ ଋଷିମାନଙ୍କୁ କହୁଅଛନ୍ତି :—

"ବକ୍ଷ୍ୟାମି ପରମଂ ପୁଣ୍ୟଂ ସ୍ଥାନଂ ଶମ୍ଭୋଃ ଦ୍ୱିଜୋତ୍ତମାଃ
ସର୍ବ ପାପହରଂ ରମ୍ୟଂ କୈଳାସଂ ପର୍ବତୋତ୍ତମଂ
ବିରଜୈକାମ୍ରୟୋର୍ମଧ୍ୟେ କୈଳାସଂ ଚ ଶ୍ରୁତଂ ଦ୍ୱିଜାଃ
ସର୍ବ ପାପହରୋ ଦେବ ସ୍ତନ ଶ୍ରୀ ଶିଖରେଶ୍ୱରଃ ।"

ହେ ଦ୍ୱିଜ ଶ୍ରେଷ୍ଠଗଣ ମୁଁ ତୁମ୍ଭମାନଙ୍କୁ ପରମ ପବିତ୍ର ସର୍ବପାପ-ହରଣକାରୀ, ପରମ ରମଣୀୟ ଶମ୍ଭୁଙ୍କର ଅଧିଷ୍ଠାନ କୈଳାସ କଥା କହୁଅଛି ।

ହେ ବ୍ରାହ୍ମଣମାନେ ବିରଜା ଓ ଏକାମ୍ର ମଧ୍ୟରେ କୈଳାସ ଅବସ୍ଥିତ । ସେଠାରେ ସର୍ବପାପହର ଦେବ ଶ୍ରୀ ଶିଖରେଶ୍ୱର ବିରାଜମାନ ।

ବିରଜା କ୍ଷେତ୍ର ( ଯାଜପୁର ) ଓ ଏକାମ୍ର ( ଭୁବନେଶ୍ୱର ) ଏହି ବିଖ୍ୟାତ କ୍ଷେତ୍ର ଦ୍ୱୟ ମଧ୍ୟରେ କପିଳାସ କ୍ଷେତ୍ର ଅବସ୍ଥିତ । ଭୌଗଳିକ ଅବସ୍ଥିତି ଦୃଷ୍ଟିରୁ ଏହି କୈଳାସ ଯେ ଆମ୍ଭମାନଙ୍କର କପିଳାସ ପର୍ବତ ଏଥିରେ ସନ୍ଦେହର ଅବକାଶ ନାହିଁ । ମାତ୍ର 'କୈଳାସ' ନାମ କେବେ 'କପିଳାସ'ରେ ପରିଣତ ହେଲା ଏବଂ 'ଚନ୍ଦ୍ରଶେଖର' କେବେ 'ଚନ୍ଦ୍ର-ଶେଖର' ନାମରେ ରୂପାନ୍ତରିତ ହେଲେ ତାହା ନିର୍ଦ୍ଦିଷ୍ଟ ଭାବରେ ଜଣାଯାଇ ନାହିଁ । ହିମାଳୟ ପର୍ବତମାଳାରେ କୈଳାସ ଗିରିଶୃଙ୍ଗ ବହୁ ପ୍ରାଚୀନ । ଏହା ପୃଥିବୀର ଉଚ୍ଚତମ ଶୃଙ୍ଗମାନଙ୍କ ମଧ୍ୟରେ ଏକତମ । ହିମାଳୟରେ ପରମାରାଧ୍ୟ ଶିବଙ୍କର ଅଧିଷ୍ଠାନ ଓ ତାଙ୍କ ମସ୍ତକରୁ ପ୍ରବହମାନା ପୁଣ୍ୟତୋୟା ଗଙ୍ଗାନଦୀର ବର୍ଣ୍ଣନାରେ ବହୁ ପ୍ରାଚୀନ ପୁରାଣ ଓ କାବ୍ୟ ପ୍ରଣେତାମାନଙ୍କର ଲେଖନୀ ପବିତ୍ର ହୋଇଅଛି । ମହାକବି କାଳିଦାସଙ୍କର 'କୁମାର ସମ୍ଭବ' କାବ୍ୟରେ ହିମାଳୟର ବର୍ଣ୍ଣନା ଅନନ୍ତ ମହିମାମୟ । କପିଳ ସଂହିତାର ଲେଖକ କପିଳାସର ବର୍ଣ୍ଣନାରେ ମଧ୍ୟ ବିଶେଷ କବିତ୍ୱ ପ୍ରକାଶ କରିଅଛନ୍ତି । କପିଳାସର ଉତ୍ପତ୍ତି ସମ୍ବନ୍ଧରେ ସେ ଲେଖିଛନ୍ତି—

ଯଦୋଦ୍ଧୃତଞ୍ଚ କୈଳାସଂ ରାବଣେନ ଦୁରାତ୍ମନା
ତଦେକ ଶୃଙ୍ଗ ପତିତଂ ତତ୍ର କୈଳାସ ମିହୋଚ୍ୟତେ ।

ଦୁରାତ୍ମା ରାବଣ ଥରେ ଶିବ ଦର୍ଶନ କରିବାକୁ ଯାଇ ଦାମ୍ଭିକତା ଓ ନିର୍ବିବେକତା ଫଳରେ ଶିବାଧିଷ୍ଠାନ କୈଳାସ ଶୃଙ୍ଗକୁ ଉତ୍ପାଟନ କରି ଲଙ୍କାକୁ ନେଇଯିବାକୁ ଇଚ୍ଛା କରିଥିଲା । ମହାଯୋଗୀ ଶିବ ସେତେବେଳେ ଧ୍ୟାନସ୍ଥ । ପଥ ମଧ୍ୟରେ ତାଙ୍କର କଣ୍ଟିତ ଧ୍ୟାନ ଭଙ୍ଗ ହେବାରୁ ସେ ରାବଣର ଦୁର୍ବୁଦ୍ଧି ବୁଝିପାରି ଏପରି ପ୍ରଭାବ ପକାଇଲେ ଯଦ୍ଦ୍ୱାରା ରାବଣ ସେହି ଶୃଙ୍ଗକୁ ଅନ୍ୟତ୍ର ନେବାର ଦୁରାଶା ପରିତ୍ୟାଗ କରି ପୁନର୍ବାର ତାହା ହିମାଳୟରେ ସ୍ଥାପନ କଲା । ସେହି ଶୃଙ୍ଗର ଗୋଟିଏ ଅଂଶ ଉତ୍କଳରେ ପତିତ ହେବାରୁ ପ୍ରଭୁ କୃପାରେ ତାହା ଦ୍ୱିତୀୟ କୈଳାସ ନାମରେ ନାମିତ ହେଲା ଏବଂ ପ୍ରଭୁ ଶିବ ସେହି ପର୍ବତ ମେଖଳାରେ ଆତ୍ମପ୍ରକାଶ କଲେ । ଏଠାରେ ମଧ୍ୟ ଗଙ୍ଗାଦେବୀଙ୍କର ଆବିର୍ଭାବ ହେଲା । କ୍ରମେ ପ୍ରଭୁକୃପାରେ ତାଙ୍କର ଆବିର୍ଭାବ ଲୋକଲୋଚନ ଗୋଚରୀଭୂତ ହେଲା । ପର୍ବତ ଶିଖରରେ ଆବିର୍ଭାବ ପରେ ତାଙ୍କ ଅନ୍ୟ ନାମ ଶିଖରେଶ୍ୱର ହେଲା । ପରବର୍ତ୍ତୀ କାଳରେ ଦେବମନ୍ଦିର ନିର୍ମିତ ହୋଇ ଶିଖରେଶ୍ୱର ନାମ

ପରିବର୍ତ୍ତିତ ହୋଇ ଶ୍ରୀ ଚନ୍ଦ୍ରଶେଖର ହୋଇଥିବ । ଆଉ ମଧ୍ୟ କପିଳ ମୁନିଙ୍କ ଆଶ୍ରମ ଏଠାରେ ପ୍ରତିଷ୍ଠିତ ହେବା ପରେ 'କପିଳାସ" ( କପିଳାଶ୍ରମ ବା କପିଳାବାସ ନାମରୁ କପିଳାସ ) ହୋଇଥିବ ।

ରାବଣର କୈଳାସ ଉପାଡ଼ିବା କଥା ବିଷୟରେ କପିଳ ସଂହିତାର ପଦ୍ୟାନୁବାଦ—ORISSA STATE MUSEUM M/S C 4/174

ଯେ କଇଳାସ ନାମେ ଗିରି
ରାବଣେଶ୍ୱର ନାମ ଯେହି
ସେ ଅତି ଦୁଷ୍ଟ ପଣ କରେ
ଜଗତ ଜାଣିବାର ଆଶେ
ଶମ୍ଭୁଙ୍କ ନିଜସ୍ଥାନ ଯେହି
ମିଳିଲା ପର୍ବତର ତଳେ
ପର୍ବତ ଧରି ଓପାଡ଼ିଲା
ସେ ଗିରିଶୃଙ୍ଗ ବାହୁବଳେ
ଉତ୍କଳ ଦେଶେ ପଡ଼େ ଯାଇ
ସେ ଧେନ ତହିଁ ଦେବ ହରି

ତହିଁ ଅଛନ୍ତି ବିଜେ କରି
ଦଇତ ଦୁରିତମ ସେହି
ସଂସାରେ ଭ୍ରମେ ନିରନ୍ତରେ
ଦିନେ ମିଳିଲା କଇଳାସେ
ରାବଣେଶ୍ୱର ତହିଁ ଯାଇ
ଆପଣା ନିଜ ଭୁଜବଳେ
ତହିଁରୁ ଖଣ୍ଡେକ ଝିଡ଼ିଲା
ଝିଡ଼ି ପଡ଼ିଲା ଅନ୍ତରାଳେ
ତାକୁଟି କଇଳାସ କହି
ରହିଲେ ଶ୍ରୀ ଶିଖରେଶ୍ୱର ।

( ୭୮ ରୁ ୮୭ )

ରାବଣ କୈଳାସ ଶୃଙ୍ଗ ଉତ୍ପାଟନ କରିବା ବିଷୟରେ ମହାତ୍ମା ତୁଳସୀ ଦାସ କୃତ ଶ୍ରୀ ରାମଚରିତ ମାନସରେ ଗୋଟିଏ ପଦ ଦେଖାଯାଏ—

କୌତୁକହିଁ କୈଳାସ ପୁନି ଲୀହେସି ଜାଇ ଉଠାଇ
ମନହୁଁ ତୌଲି ନିଜ ବାହୁବଲ ଚଲା ବହୁତ ସୁଖ ପାଇ ।

( ବାଳକାଣ୍ଡ—୧୭୯ )

ରାବଣର ବଳ ପରାକ୍ରମ ବର୍ଣ୍ଣନା କରି କବି ଏତିକି ମାତ୍ର ଲେଖିଛନ୍ତି । ତାପରେ କଣ ହେଲା ସେକଥା ରାମଚରିତ ମାନସରେ ନାହିଁ । ରାବଣ ବର ପାଇବା ପରେ କୁବେରଙ୍କୁ ପରାସ୍ତ କରି ତାଙ୍କର ରାଜ୍ୟ ଅଧିକାର କଲେ ଏବଂ ଦିଗ୍‌ବିଜୟ କରୁ କରୁ କୈଳାସ ପର୍ବତକୁ ଯାଇ ଶୃଙ୍ଗ ଉତ୍ପାଟନ କଲେ । ସେ ନିଜର ବାହୁବଳ ଓଜନ କରି ଏହି କଠୋର କର୍ମରେ ଲିପ୍ତ ହୋଇ କୃତକାର୍ଯ୍ୟ ନହେବାରୁ ଆନନ୍ଦିତ ହେଲେ । ସେ ପର୍ବତ ଶୃଙ୍ଗକୁ ଲଙ୍କାକୁ ନେବା କଥା ରାମଚରିତ ମାନସରେ ନାହିଁ ।

କାଳିଦାସଙ୍କ ମେଘଦୂତ କାବ୍ୟର ଅନୁବାଦରେ କବିବର ରାଧାନାଥଙ୍କ ଲେଖାରେ ମଧ୍ୟ ଅଛି—

ଦୁର୍ଦ୍ଦଣ୍ଡ ଦଶଗ୍ରୀବ ରୋଷେ ହୁଙ୍କାରି
ଝିଙ୍କିଲା ଶୈଳ ଯେବେ ଭୁଜ ପ୍ରସାରି
ନାଗେ ନରେ ଅମରେ କମ୍ପିଲେ ତ୍ରାସେ
ମିଳିଲା ଅମ୍ବୁରାଶି ଊର୍ମି ଆକାଶେ ।
× × ×
ଗମ୍ଭୀର ବଜ୍ର ଘୋଷେ ଘୋଷି କନ୍ଦର
ପଳାଇଲେ ଜୀମୂତେ ଗୁଡ଼ି ଭୂଧର
ଗର୍ଜିଲେ ପ୍ରଭଞ୍ଜନ ହୋଇଲା ଅନ୍ଧାର
ଉଡ଼ିଲା ସ୍ତୂପାକାରେ ସାନ୍ଦ୍ର ତୁଷାର ।
× × ×
ଆତଙ୍କେ ଗିରିବାସୀ ଗଉରୀସାଇଁ
ପାଦେ ଶରଣ ବେଗେ ପଶିଲେ ଯାଇଁ
ହସିଲେ ତହୁଁ ପ୍ରଭୁ ଭକ୍ତବତ୍ସଳ
ଅଚଳ ନୃପବର ହୋଇଲା ଅଚଳ ।

କବିଙ୍କ ମତରେ ରାବଣ କୈଳାସ ଶୃଙ୍ଗ ଉତ୍ପାଟନ କରିବାକୁ ଚେଷ୍ଟାକରି କୃତକାର୍ଯ୍ୟ ହୋଇ ପାରି ନଥିଲା । ଗିରିବାସୀଙ୍କର ପ୍ରାର୍ଥନାରେ ଶ୍ରୀ ମହାଦେବ ଏହାର ପ୍ରତିକାର କରିଥିଲେ । ରାବଣ ଲଜ୍ଜିତ ହୋଇ ଫେରି ଯାଇଥିଲା ।

କପିଳ ସଂହିତାର ଲେଖା ଶ୍ରୀ ରାମଚରିତ ମାନସ ଲେଖା ସହିତ ଖାପ ଖାଉଅଛି ।

କପିଳ ସଂହିତା ସମ୍ବନ୍ଧରେ ପ୍ରକାଶକ ଗର୍ଗବଟୁ ଲେଖିଛନ୍ତି, "ଭ୍ରମପ୍ରମାଦାଦି ପୁରୁଷ ଦୋଷ ଚତୁଷ୍ଟୟ ରହିତ ସର୍ବଜ୍ଞ କପିଳ ପ୍ରଣୀତେଽସ୍ମିନ୍ ପୁରାଣେପୁରାଣକଳ୍ପେ ଗ୍ରନ୍ଥେ ବିଦୁଷାଂ ଭକ୍ତାନାଞ୍ଚ ଆଦରାତିଶଯ୍ୟଂ ନଚ୍ୟମେବାସ୍ତି ।"

ଅର୍ଥାତ୍ ଭ୍ରମ ପ୍ରମାଦାଦି ଦୋଷମୁକ୍ତ ସର୍ବଜ୍ଞ କପିଳଙ୍କ ପ୍ରଣୀତ ଏହି ଗ୍ରନ୍ଥ ପ୍ରତି ପଣ୍ଡିତ ଓ ଭକ୍ତମାନଙ୍କର ବିଶେଷ ଆଦର ପରିଲକ୍ଷିତ ହୁଏ ।

ଭ୍ରମ ପ୍ରମାଦ ବିପ୍ରଲିପ୍‌ସା କରଣା ପାଟବ
ମହାଜନେର ବାକ୍ୟେ ନାଇଁ ଏଇ ଦୋଷ ସବ ।

( ଚୈତନ୍ୟ ଚରିତାମୃତ )

ଏହି ମତ ବଳରେ କପିଳ ସଂହିତାର ଲେଖାରେ ସନ୍ଦେହ ପ୍ରକାଶ କରିବା ଧୃଷ୍ଟତା ।

ପୂର୍ବରୁ କୁହାଯାଇଛି କପିଳନାମା ଏକ ବିଖ୍ୟାତ ମୁନି କପିଳାସରେ ବହୁଦିନ ରହି ତପସ୍ୟା କରିଥିଲେ । ତାଙ୍କର ବାସ ଯୋଗୁଁ ପର୍ବତର ନାମ କପିଳବାସ ବା କପିଳାସ ହୋଇଥିବା ସମ୍ଭବ । କପିଳ ସଂହିତା ସାଂଖ୍ୟ ପ୍ରଣେତା କପିଳଙ୍କର ନ ହୋଇ ପାରେ, କିନ୍ତୁ ସାଂଖ୍ୟ ପ୍ରଣେତା ମହର୍ଷି କପିଳ କପିଳାସ କ୍ଷେତ୍ରରେ ରହି ତପସ୍ୟା କରିବା କିଛି ବିଚିତ୍ର କଥା ନୁହେଁ । ମୁନିମାନେ ନିଭୃତ ପାର୍ବତ୍ୟସ୍ଥାନକୁ—ଯେଉଁ ଠାରେ ନିର୍ଝର ଜଳ ପ୍ରବାହ ଓ ନାନା ଫଳପୁଷ୍ପ ମଣ୍ଡିତ ବୃକ୍ଷଲତା ଅଛି—ତପଃ ସାଧନର ଅନୁକୂଳ ବୋଲି ମନେ କରୁଥିଲେ ।

ପୁନଶ୍ଚ କପିଳ ସଂହିତାରେ ଲିଖିତ ହୋଇଅଛି ଯେ, ପୂର୍ବ-କାଳରେ ସତ୍ୟଯୁଗରେ ସୌଦାସ ନାମା ଜଣେକ ରବିବଂଶୀୟ ରଜା ମନ୍ତ୍ରସିଦ୍ଧି ପାଇଁ ଉପଯୁକ୍ତ ସ୍ଥାନ ନିର୍ଦ୍ଦେଶ କରିବାକୁ ମହର୍ଷି ବଶିଷ୍ଠଙ୍କୁ ଅନୁରୋଧ କରନ୍ତେ ମହର୍ଷି ତାଙ୍କୁ ବାରାଣସୀ କ୍ଷେତ୍ରକୁ ଯିବାପାଇଁ ଉପଦେଶ ଦେଲେ । ରଜା ସୌଦାସ କିଛି କାଳ ବାରାଣସୀରେ ତପସ୍ୟା କଲା ପରେ ସ୍ୱୟଂ କାଶୀଶ୍ୱର ସଦାଶିବ ତାଙ୍କୁ ସ୍ୱପ୍ନାଦେଶ ଦେଲେ—

"ଇଦାନୀଂ ଗଚ୍ଛ ତପସେ କୈଳାସଂ ନିଳୟଂ ମମ
ତତ୍ରାହଂ ଦର୍ଶୟିଷ୍ୟାମି ସତ୍ୟଂ ତ୍ୱାଂ ମାମକୀତନୁଂ ।

ଅର୍ଥାତ୍ ତୁମେ ବର୍ତ୍ତମାନ ମୋର କୈଳାସ ନାମକ ବାସଭୂମିକୁ ଯାଇ ସେଠାରେ ତପସ୍ୟା କର । ସେଠାରେ ମୁଁ ମୋର ସ୍ୱରୂପ ତୁମ୍ଭଙ୍କୁ ଦେଖାଇବି ।

# କପିଳସଂହିତା ପଦ୍ୟାନୁବାଦ

ଏମନ୍ତେ କେତେ କାଳ ଅନ୍ତେ ସେ ମହେଶ୍ୱର ବିଶ୍ୱନାଥେ
ଆପଣା ସ୍ୱରୂପ ଦେଖାଇ ତାହାଙ୍କୁ ଦରଶନ ଦେଇ
ସ୍ୱପ୍ନେ ସେ ଦେବ ବିଶ୍ୱେଶ୍ୱର ରାଜାଙ୍କୁ କହନ୍ତି ମଧୁର
ହେ ମହାବାହୁ ରାଜା ଶୁଣ ଏ କ୍ଷେତ୍ରେ ଆଇଲୁ ଯେ ପୁଣ
ମୁକତିପ୍ରଦ କ୍ଷେତ୍ର ଏହି ଉତ୍ତମ ପର୍ବତଟି ଯେହି
ଏବେ ତୁ ମୋର ବୋଲ କର କହିବା ପରମ ଖବର
ଯେ ମୋର କଇଳାସ ଆନ ତହିଁକି ଯାଅ ତୁ ବହନ
ତପ ତୁ କର ତହିଁ ଥାଇ ମୋହର ନିଜ ରୂପ ଯେହି
ସାକ୍ଷାତେ ତନୁ ମୋର ଯାହା ତୋତେ ମୁଁ ଦେଖାଇବି ତାହା ।

ଏହି ରାଜା ସୌଦାସ କେଉଁ ରାଜ୍ୟ ବା କେଉଁ କାଳର ବ୍ୟକ୍ତି ତାହାର କୌଣସି ପ୍ରମାଣ ନାହିଁ । ମାତ୍ର ଏହା ସ୍ପଷ୍ଟରୂପେ ଜଣାଯାଏ ଯେ, ସେ ସଂହିତା ଲେଖକଙ୍କର ପୂର୍ବବର୍ତ୍ତୀ କୌଣସି ସୂର୍ଯ୍ୟବଂଶୀୟ ରାଜା ଏବଂ ଭଗବାନ ଶିବଙ୍କର ସ୍ୱପ୍ନାଦେଶ ପାଇ କପିଳାସରେ ତପଃ ସାଧନ କରିଥିଲେ । ସ୍ୱୟଂ ମହାଦେବ କପିଳାସକୁ 'ଗୁପ୍ତ କାଶୀ' ଆଖ୍ୟା ଦେଇ ଅଛନ୍ତି । ଏହାର ପ୍ରାକୃତିକ ପରିବେଶ ମୁନିମାନସ ମୋହନ । ଏଥିରେ ବହୁ ପ୍ରାଚୀନ କାଳରୁ ମୁନିମାନେ ତପସ୍ୟା କରୁଥିବାର କିମ୍ବଦନ୍ତୀ ଶୁଣାଯାଏ ।

ଏହିପରି ଭାବରେ ଶ୍ରୀ ମହାଦେବଙ୍କର ନିର୍ଦ୍ଦେଶ ପାଇ ରାଜା ସୌଦାସ କପିଳାସକୁ ଆସିବା ବେଳେ ତାହା କେଉଁ ରାଜ୍ୟର ଅନ୍ତର୍ଗତ ଥିଲା ଅଥବା ସୌଦାସ କପରି ଭୀଷଣ ଅରଣ୍ୟସଂକୁଳ ପ୍ରଦେଶରେ କପିଳାସର ସ୍ଥିତି ନିରୂପଣ କଲେ ତାହା ଜାଣିବା କଠିନ । କଇଳାସ ଯେ ଉତ୍କଳର ଅନ୍ତର୍ଗତ ତାହା ଭଗବାନ ଶଙ୍କର ସ୍ୱମୁଖରେ ପ୍ରକାଶ କରିଥିଲେ—

ପର୍ବତ କଇଳାସ ଯେହି ତହୁଁ ଉତ୍କଳ ଦେଶେ ଯାଇ
ପ୍ରବେଶ ହୋଇବୁ ତକ୍ଷଣେ ସେ ମହାନଦୀର ଦକ୍ଷିଣେ
ବିରଜା ନାମେ ଦେବୀ ଯେହୁ ସେଠାରେ ଅଛନ୍ତି ସେହୁ ।

× × ×

ପୁଣି ଆସିବୁ କଇଳାସେ ମିଳିବୁ ମହାଶମ୍ଭୁ ପାଶେ
ଶିଖରେଶ୍ୱର ନାମ ହୋଇ ସେଠାରେ ଅଛଇଟି ମୁହିଁ

ତହିଁ ଦେଖିବୁ ଆସି ମୋତେ   ଦର୍ଶନ କରିବୁ ପର୍ବତେ
ଚତୁର ବର୍ଗ ଫଳ ଯାହା   ସେଠାରେ ଦିଅଇ ମୁଁ ତାହା
ସକଳ ପାପ ମୁଁ ହରଇ   ଶିଖରେଶ୍ୱର ନାମ ବହି ।

( କପିଳ ସଂହିତା ପଦ୍ୟାନୁବାଦ )

ସମ୍ଭବତଃ ସେତେବେଳେ କପିଳାସର ପ୍ରସିଦ୍ଧି ଥିଲା ଏବଂ ପରେ କାଳ-ବଶରେ ତାହାର ଖ୍ୟାତି ହ୍ରାସ ହୋଇଛି । ଭଗବାନ ଶ୍ରୀକୃଷ୍ଣଙ୍କ ସ୍ୱଧାମ ଗମନର ଅନେକ କାଳ ପରେ ଶ୍ରୀବୃନ୍ଦାବନ ଭୀଷଣ ଅରଣ୍ୟାଚ୍ଛାଦିତ ହୋଇଥିଲା । ଶ୍ରୀ ଚୈତନ୍ୟଙ୍କ ଆବିର୍ଭାବ କାଳରେ ଉକ୍ତ ଧାମ ସବୁ ପ୍ରକଟ ହେବାକୁ ଲାଗିଲା । ଶ୍ରୀରାଧାକୁଣ୍ଡ, ଶ୍ୟାମକୁଣ୍ଡ ଓ ଅନ୍ୟାନ୍ୟ କୁଞ୍ଜ ପ୍ରଭୃତି କପରି ପୁନରାବିଷ୍କୃତ ହେଲା ତାହା ଶ୍ରୀଚୈତନ୍ୟ ଚରିତାମୃତରୁ ଜଣାଯାଏ । ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ଶ୍ରୀଜଗନ୍ନାଥ ମନ୍ଦିର କପରି ଲୁପ୍ତ ହୋଇ ଯାଇଥିଲା ଏବଂ ପରେ ଶ୍ରୀଜଗନ୍ନାଥ ଧାମ ପୁନଃ-ପ୍ରତିଷ୍ଠିତ ହେଲା ଏବଂ ପରବର୍ତ୍ତୀ କାଳରେ ଉତ୍କଳୀୟ ଗଜପତି ମହାରାଜମାନେ କପରି ଶ୍ରୀଜଗନ୍ନାଥ ମନ୍ଦିର ନିର୍ମାଣ କଲେ, ତାହା ଓଡ଼ିଶାର ଇତିହାସ ଓ ନୀଳାଦ୍ରିମହୋଦୟ ପ୍ରଭୃତି ଗ୍ରନ୍ଥମାନଙ୍କରୁ ଜଣାଯାଏ । ଜଗନ୍ନାଥ ସମ୍ବନ୍ଧ ଓ ମନ୍ଦିରାଦି ବିଷୟ ବହୁ ପ୍ରାଚୀନ ମାଦଳା ପାଞ୍ଜି, କମ୍ବଦନ୍ତୀ ମଧ୍ୟରୁ ସଙ୍ଗୃହୀତ ହୋଇଅଛି । କପିଳାସ ଝାଡ଼ଖଣ୍ଡର * ଅନ୍ତର୍ଭୁକ୍ତ ଥିବାରୁ ତାହା ଲୋକଲୋଚନ ଗୋଚର ହେବାକୁ ବହୁତ ସମୟ ଲାଗିଥିବା ସମ୍ଭବ ।

* ଝାଡ଼ଖଣ୍ଡ—ପ୍ରାଚୀନ ଉତ୍କଳର ଗଡ଼ଜାତ ଅଞ୍ଚଳରେ ଥିବା ରାଜ୍ୟଗୁଡ଼ିକୁ ଝାଡ଼ଖଣ୍ଡ ଆଖ୍ୟା ଦିଆ ଯାଉଥିଲା । ଓଡ଼ିଶା କହିଲେ କଟକ, ପୁରୀ, ବାଲେଶ୍ୱର ଏହି ଜିଲ୍ଲା ଅନ୍ତର୍ଗତ ଅଞ୍ଚଳକୁ ବୁଝାଉଥିଲା । ଏଗୁଡ଼ିକ ପ୍ରାୟ ମୋଗଲ ବନ୍ଦି ଅଞ୍ଚଳ କୁହାଯାଇଥାଏ । ଏଗୁଡ଼ିକ ମୋଗଲ, ମୁସଲମାନ, ମରହଟ୍ଟା ଓ ପରିଶେଷରେ ଇଂରେଜମାନଙ୍କ ଦ୍ୱାରା ଶାସିତ ହେଉଥିଲା । ଏତଦ୍ ଭିନ୍ନ ଅଞ୍ଚଳ ଅରଣ୍ୟ-ସଂକୁଳ ଥିବାରୁ ଝାଡ଼ଖଣ୍ଡ ନାମରେ ନାମିତ ହେଉଥିଲା । ସେତେବେଳର ଢେଙ୍କାନାଳ ରାଜାଙ୍କର 'ଝାଡ଼ଖଣ୍ଡ ବାଦଶାହା' ଉପାଧି ଥିଲା । ଚନ୍ଦ୍ରଶେଖର ପାଣିଙ୍କର 'ଖାରି ନିର୍ଲୋଚନ' ନାଟକରେ ମଧ୍ୟ ଢେଙ୍କାନାଳ ନରପତିଙ୍କୁ 'ଝାଡ଼ଖଣ୍ଡ ବାଦଶାହା' ବୋଲି ସମ୍ବୋଧନ କରାଯାଇଛି । ଟିଙ୍ଗିମରମାଳ ଅଞ୍ଚଳ ଓ ଗଡ଼ଜାତ ସମୂହ ଝାଡ଼ଖଣ୍ଡ ବୋଲି ପରିଚିତ ହେଉଥିଲା । କବିସୂର୍ଯ୍ୟ ତାଙ୍କର ପୃଷ୍ଠପୋଷକ ଆଠଗଡ଼ ରାଜାଙ୍କୁ 'ଝାଡ଼ଖଣ୍ଡର ବାଦଶା' ବୋଲି ତାଙ୍କର କିଶୋର ଚନ୍ଦ୍ରାନନ ଚମ୍ପୂର "ଝ" ଗୀତର ଭଣିତାରେ ଲେଖିଛନ୍ତି ।

ରାଜା ସୌଦାସ କପିଳାସରେ ତପସ୍ୟା କରି ମନ୍ତ୍ରସିଦ୍ଧି ଲାଭ କରିବା ପରେ ସେଠାରେ ସ୍ଥାନ ସଂସ୍କାର କରି ଠାକୁରଙ୍କ ମନ୍ଦିର ଓ ଯଥାସମ୍ଭବ ସେବା ପୂଜାର ବ୍ୟବସ୍ଥା କରାଇଥିବେ । ମାତ୍ର ତାହାର କୌଣସି ଐତିହାସିକ ପ୍ରମାଣ ନାହିଁ । ଶ୍ରୀ ଚନ୍ଦ୍ରଶେଖରଙ୍କର ଆଧୁନିକ ମନ୍ଦିରର ଆହୁରି ଊର୍ଦ୍ଧ୍ୱ ଦେଶରେ ଯେଉଁ ବିଶ୍ୱେଶ୍ୱର ମନ୍ଦିର ଅବସ୍ଥିତ ତାହାର ଲିଙ୍ଗ ବହୁ ପ୍ରାଚୀନ ଓ ବୁଢ଼ାଲିଙ୍ଗ ନାମରେ ପରିଚିତ । ଏହି ବିଶ୍ୱେଶ୍ୱର ବା ବୁଢ଼ାଲିଙ୍ଗଙ୍କୁ ସଂହିତା ବର୍ଣ୍ଣିତ ଶିଖରେଶ୍ୱର ବୋଲି କେହି କେହି ଅନୁମାନ କରିଥାନ୍ତି । ତାହାର ନିକଟରେ ଗୋଟିଏ କୁଣ୍ଡ ଅଛି । ପର୍ବତର ଊର୍ଦ୍ଧ୍ୱ ଦେଶରୁ ବହି ଆସିଥିବା ନିର୍ଝର ଜଳ ଏହି କୁଣ୍ଡରେ ପଡ଼ି କ୍ରମେ ଅନ୍ୟତ୍ର ପ୍ରବାହିତ ହୋଇଥାଏ । ତାହାର ଅଳ୍ପ ଦୂରରେ ନାରାୟଣ ମୂର୍ତ୍ତି ଗୋଟିଏ ମନ୍ଦିର ମଧ୍ୟରେ ପ୍ରତିଷ୍ଠିତ ହୋଇ ଅଛନ୍ତି ଏବଂ ତାଙ୍କ ପାଦଦେଶରୁ ଗଙ୍ଗା ପ୍ରବାହିତ ହେଉଅଛନ୍ତି । ଏହା ପରବର୍ତ୍ତୀ କାଳରେ ଢେଙ୍କାନାଳ ରାଜବଂଶର କୀର୍ତ୍ତି । ରାଜା ଦୀନବନ୍ଧୁ ମହେନ୍ଦ୍ର ବାହାଦୁରଙ୍କ ପାଟରାଣୀ ଶ୍ରୀମତୀ ଅନ୍ନପୂର୍ଣ୍ଣା ଦେବୀ ଏ ବିଗ୍ରହ ଓ ମନ୍ଦିର ପ୍ରତିଷ୍ଠା କରିଥିଲେ ।

କପିଳାସର ଉନ୍ନତି ଓଡ଼ିଶାର ଗଜପତି ମହାରାଜ ପ୍ରତାପ ନରସିଂହ ଦେବଙ୍କ ଦ୍ୱାରା କରାଯାଇ ଥିବାର ପ୍ରମାଣ ମିଳେ । କପିଳାସର ଶିଳାଲିପିହିଁ ଏହାର ପ୍ରମାଣ । ପ୍ରବାଦ ଅଛି ଯେ, ଥରେ ଯୁବରାଜ ଅନଙ୍ଗଭୀମ ସମୁଦ୍ର କୂଳରେ ଏକାକୀ ଭ୍ରମଣ କରୁ କରୁ ଅନ୍ଧକାରରେ ଗୋଟିଏ ଷଣ୍ଢକୁ ଦେଖି ବ୍ୟାଘ୍ର ଭ୍ରମରେ ତାହାକୁ ହତ୍ୟା କଲେ । ପରେ ଯେତେବେଳେ ଜାଣିଲେ ଯେ ତାହା ଗୋଟିଏ ଷଣ୍ଢ, ସେତେବେଳେ ଷଣ୍ଢବଧ ଜନିତ ପାତକ ଭୟରେ ଅତ୍ୟନ୍ତ କାତର ହୋଇ ଶ୍ରୀ ଜଗନ୍ନାଥଙ୍କ ଠାରେ ଶରଣାପନ୍ନ ହେଲେ । ଶ୍ରୀମନ୍ ମହାପ୍ରଭୁଙ୍କର ସ୍ୱପ୍ନାଦେଶ ହେଲା—"ତୁମ୍ଭେ ଝାଡ଼ଖଣ୍ଡ ରାଜ୍ୟରେ କପିଳାସ ପର୍ବତକୁ ଯାଇ ସେଠାରେ କୃଚ୍ଛ୍ର ସାଧନ ଦ୍ୱାରା ଶିବଙ୍କୁ ଆରାଧନା କରି ଦୋଷ ମୁକ୍ତ ହୁଅ ।"

ସ୍ୱପ୍ନାଦେଶ ପାଇ ଯୁବରାଜ ଅନଙ୍ଗ କପିଳାସର ଅନୁସନ୍ଧାନରେ ନାନା ସ୍ଥାନକୁ ଚର ପ୍ରେରଣ କଲେ । ସେତେବେଳେ କପିଳାସ ଓ ତାହାର ଚତୁଷ୍ପାର୍ଶ୍ୱ ଅଞ୍ଚଳ ଆଦିବାସୀ ବହୁଳ ଥିଲା । ଚରମାନେ ନାନା କୌଶଳରେ କପିଳାସର ସନ୍ଧାନ କରି ରାଜାଙ୍କୁ ଜଣାଇବାରୁ ସେ ସୈନ୍ୟ ସାମନ୍ତ ଓ ସେବକମାନଙ୍କ ଗହଣରେ ଆସି ଅରଣ୍ୟ ପରିଷ୍କାର କରି ଅନେକ ଦିନ ପରେ କପିଳାସ ପର୍ବତରେ ଉପସ୍ଥିତ ହେଲେ । ଶିବଙ୍କୁ ଦର୍ଶନ କରି ଏବଂ ସେହି ସ୍ଥାନର ନୈସର୍ଗ

ସୌନ୍ଦର୍ଯ୍ୟରେ ବିମୋହିତ ହୋଇ ମହାରାଜ ସେଠାରେ କିଛିକାଳ ଅବସ୍ଥାନ କରିବେ ବୋଲି ସ୍ଥିର କଲେ । ତାଙ୍କ ଉଦ୍ୟମରେ ବୃଦ୍ଧେଶ୍ୱରଙ୍କର (ବୁଢ଼ାଲିଙ୍ଗ) ମନ୍ଦିର ନିର୍ମିତ ହେଲା । ଅତି ପ୍ରାଚୀନ ପୟୋଽମୃତ, ମଣିକର୍ଣ୍ଣିକା ଓ ଜମ୍ବୁକୁଣ୍ଡ-ମାନଙ୍କର ସଂସ୍କାର କରାଗଲା ।

କପିଳାସର ତତ୍‌କାଳୀନ ପ୍ରାକୃତିକ ସୌନ୍ଦର୍ଯ୍ୟ ସମ୍ବନ୍ଧରେ କପିଳ ସଂହିତାର ବର୍ଣ୍ଣନା ଦ୍ରଷ୍ଟବ୍ୟ—

ବକୁଳୈଃ ଚମ୍ପକୈ ବୃକ୍ଷୈଃ କୋବିଦାରୈଃ ଫଳାନ୍ୱିତୈଃ
ତନ୍ତ୍ରୀ କ୍ଷୀର ବୃକ୍ଷୈଃସ୍ତୁ ଖଦିରୈଶ୍ଚାଞ୍ଜୁକୈସ୍ତଥା
ପାଟଳଭଦ୍ରୈ ନିକୁମାଳୈ ଧାତ୍ରୀଭି ନାଗକେଶରୈଃ
ଜାତିକା ଯୂଥିକାଭିଶ୍ଚ ପୁଷ୍ପୈ ଶ୍ଚୈବ ସୁବାସିତୈଃ ।

× × ×

ବ୍ରହ୍ମାଦ୍ୟା ଦେବତାଃ ସର୍ବାଃ କାଙ୍‌କ୍ଷନ୍ତି ଚ ମୁହୁର୍ମୁହୁଃ
ଭୂମିଲୋକଂ କଦାଗତ୍ୱା ଦ୍ରକ୍ଷ୍ୟାମଃ ଶିଖରେଶ୍ୱରଂ
କାଙ୍‌କ୍ଷନ୍ତି ପିତରଶ୍ଚୈବ ପ୍ରଜାଶ୍ଚ ସନ୍‌ପା ଯଥା
କଦାସ୍ମାକଂ କୁଳେ ଜାତଃ କୈଳାସାଦ୍ରି ଗମିଷ୍ୟତି
ତତ୍ରଗତ୍ୱା ପ୍ରଯତ୍ନେନ ସ୍ନାତ୍ୱାଽର୍ଥେ ପୟୋଽମୃତେ
ଅସ୍ମାକଂ ତର୍ପୟିତ୍ୱାଚ ନରକା ଦୁଦ୍ଧରିଷ୍ୟତି ।

× × ×

ତସ୍ମିନ୍ନଦ୍ରୌ ଦ୍ୱିଜଶ୍ରେଷ୍ଠା ସ୍ତୀର୍ଥମସ୍ତି ପୟୋମୃତଂ
ଅଗ୍ରେ ଶ୍ରୀ ଶିଖରେଶସ୍ୟ ଐଶାନ୍ୟ ଦଶମାସ୍ଥିତଂ ।
ବରେଣ୍ୟଂ ପରମଂ ପୁଣ୍ୟଂ ପିତୃଣାଂ ମୁକ୍ତିଦାୟକଂ
ଯତ୍ର ସ୍ନାତ୍ୱା ଚ ସୌଦାସୋ ରାଜା ମୁକ୍ତ ମବାପହ ।

ଅନଙ୍ଗଭୀମଙ୍କ ପରେ ତାଙ୍କ ବଂଶଧର ପ୍ରତାପ ନରସିଂହ ଦେବ କପିଳାସରେ ମନ୍ଦିରାଦି ନିର୍ମାଣ ଓ କୁଣ୍ଡାଦି ସଂସ୍କାର କରାଇ ଶ୍ରୀକ୍ଷେତ୍ରକୁ ଫେରି-ଯିବା ପୂର୍ବରୁ ଶ୍ରୀ ମହାଦେବଙ୍କର ନିତ୍ୟପୂଜା ପାଇଁ ଭୂମିବୃତ୍ତି ଖଞ୍ଜା କଲେ ଏବଂ ସେବକ, ସୁଆର, ପୂଜାପଣ୍ଡା ଓ ପୁରୋହିତ ମାନଙ୍କୁ ନିଯୁକ୍ତ କଲେ । ସେବକ ଶ୍ରେଣୀରେ ଦେବଗ୍ରାମ ( ଦେଓଗାଁ ) ର ଚନ୍ଦ୍ରାପଣୀ ନାମକ ଏକ ଜାତିର ଲୋକ ଶିବଙ୍କର [illegible] ଥିଲେ [illegible] ଚନ୍ଦ୍ରାପଣୀମାନେ ଢେଙ୍କାନାଳର ଆଦିମ ଅଧିବାସୀ । ଏମାନେ ଭିତରେ [illegible] ଆଦିମ ପୂଜକ । ଏ ଜାତିର

ଲୋକ ଉତ୍କଳ ବା ଅନ୍ୟ କୁତ୍ରାପି ଦେଖାଯାନ୍ତି ନାହିଁ । କପିଳାସ ନିକଟବର୍ତ୍ତୀ ଦେବଗ୍ରାମହିଁ ଏମାନଙ୍କର ଚିର ବାସଭୂମି । ଭୁବନେଶ୍ୱରର ବଡ଼ୁ, ପୁରୀର ଦଇତାପତି ପରି କପିଳାସର ଚନ୍ଦ୍ରାପତି ସେବକ ଭାବରେ ରାଜପ୍ରତିଷ୍ଠା ଲାଭ କରି ଆସିଛନ୍ତି । ଶ୍ରୀ ଚନ୍ଦ୍ରଶେଖରଙ୍କ ସେବାହିଁ ଏମାନଙ୍କର ମୁଖ୍ୟ ବୃତ୍ତି । କପିଳାସ କ୍ଷେତ୍ରରେ ଏମାନଙ୍କ ହସ୍ତରୁ ଅନ୍ନ ପ୍ରସାଦାଦି ଗ୍ରହଣ କରିବାରେ କୌଣସି ଜାତିଗତ କୁଣ୍ଠା ନ ଥାଏ । ବାଲ୍ୟାବସ୍ଥାରୁ ଏମାନେ ପର୍ବତାରୋହଣରେ ପଟୁ । ଅନେକଙ୍କର ପିଠିରେ ଶିଶୁକାଠ ଦୁଳା ଧରି ଓ ସ୍କନ୍ଧ ବା ଶିରରେ ଭାର ବହନ କରି କ୍ଷିପ୍ର ଗତିରେ ପ୍ରଫୁଲ୍ଲ ମନରେ ପର୍ବତାରୋହଣ କରିବା ଦେଖାଯାଏ । ଏମାନେ ଯାତ୍ରୀମାନଙ୍କୁ ନାନା ଭାବରେ ସାହାଯ୍ୟ କରନ୍ତି, ମାତ୍ର ସେମାନଙ୍କଠାରୁ କୌଣସି ପ୍ରକାରରେ ଯୋର ଜବରଦସ୍ତି ଅର୍ଥ ଆଦାୟ କରିବା ସେମାନଙ୍କ ସ୍ୱଭାବ-ବିରୁଦ୍ଧ । ଗଜପତି ମହାରାଜା ସେହି ଚନ୍ଦ୍ରାପତିମାନଙ୍କୁ ସ୍ଥାୟୀ ସେବକ ଭାବରେ ନିଯୁକ୍ତ କରିଥିଲେ । ଏହି ଚନ୍ଦ୍ରାପତିମାନେହିଁ ପରମ୍ପରା କ୍ରମେ କପିଳାସର ଅଧିଷ୍ଠାତ୍ରୀ ଦେବତାଙ୍କର ନିତ୍ୟ ସେବକ ଭାବରେ ଅଦ୍ୟାବଧି କାର୍ଯ୍ୟକରି ଆସୁଛନ୍ତି ।

ମନ୍ଦିର ଓ ସେବା ପୂଜା କାର୍ଯ୍ୟର ସୁପରିଚାଳନା ପାଇଁ ମହାରାଜା ପୁରୀ ଗୋବର୍ଦ୍ଧନ ମଠର ଜନୈକ ବିଶିଷ୍ଟ ଶିଷ୍ୟ ଓ ସାଧକ ସନ୍ନ୍ୟାସୀଙ୍କୁ ମୁଖ୍ୟ ତତ୍ତ୍ୱାବଧାରକ ରୂପେ ନିଯୁକ୍ତ କରନ୍ତି । ଚନ୍ଦ୍ରଶେଖରଙ୍କ ଦକ୍ଷିଣ ପାର୍ଶ୍ୱରେ ଏହି ସନ୍ନ୍ୟାସୀଙ୍କ ଅବସ୍ଥାନ ପାଇଁ ଗୋଟିଏ ମଠ ନିର୍ମିତ ହୋଇଥିଲା । ଏହାର ଭଗ୍ନାବଶେଷ ଆଜିଯାଏ ଅଛି । ଏହା ଦଣ୍ଡୀସ୍ୱାମୀ ମଠ ବା ବ୍ରହ୍ମଗୁମ୍ଫା ମଠ ନାମରେ ସୁପରିଚିତ । ପୁରୀ ଗୋବର୍ଦ୍ଧନ ପୀଠର ଆମ୍ନାୟରୁ ସୂଚିତ ହେଉଅଛି ଯେ, ଏହି ମଠର ବିଶିଷ୍ଟ ସନ୍ନ୍ୟାସୀ ଶ୍ରୀ ରାମକୃଷ୍ଣାନନ୍ଦଙ୍କର ଶିଷ୍ୟ ଶ୍ରୀ ଶ୍ରୀଧର ସ୍ୱାମୀ କପିଳାସରେ ରହି ତପଶ୍ଚର୍ଯ୍ୟା କରିଥିଲେ ଏବଂ ଶ୍ରୀ ନୃସିଂହଙ୍କୁ ଉପାସନା କରି ବରପ୍ରାପ୍ତ ହୋଇଥିଲେ । ତାହାଙ୍କ ବର ପ୍ରଭାବରେ ମହାତ୍ମା ଶ୍ରୀଧର ସ୍ୱାମୀ ଶ୍ରୀମଦ୍ ଭାଗବତ, ଭଗବଦ୍ ଗୀତା, ବିଷ୍ଣୁ ପୁରାଣ ଇତ୍ୟାଦିର ଟୀକା ଲେଖିଥିଲେ । ଶ୍ରୀମଦ୍ ଶ୍ରୀଧର ସ୍ୱାମୀଙ୍କର ଜନ୍ମସ୍ଥାନ ଓ କର୍ମସ୍ଥାନ ସମ୍ବନ୍ଧରେ ନାନା ମତ ଦେଖାଯାଏ । ମାତ୍ର ସେ ସମସ୍ତ ଅନିର୍ଦ୍ଦିଷ୍ଟ ଓ ସମାଲୋଚନା ସାପେକ୍ଷ । ସେ ଯାହା ହେଉ, ଶ୍ରୀଧର ସ୍ୱାମୀ ଯେ କପିଳାସରେ ଅବସ୍ଥାନ କରି ଶ୍ରୀ ନୃସିଂହଙ୍କର ଉପାସନା କରିଥିଲେ ଏହା ନିସନ୍ଦିଗ୍ଧ । ଏବିଷୟରେ ସ୍ୱତନ୍ତ୍ର ଆଲୋଚନା କରାଯିବ ।

ମନ୍ଦିରର ଅନତି ଦୂରରେ ସରଘର ଓ ପାର୍ବତୀ ଦେବୀଙ୍କ ପାଇଁ ଗୃହ ନିର୍ମିତ ହୋଇଥିଲା । ଏହା ମନ୍ଦିର ନୁହେଁ । ଏହି ପାର୍ବତୀଙ୍କ ମୂର୍ତ୍ତିର ଏକ ପାର୍ଶ୍ୱରେ ଶ୍ରୀ ନୃସିଂହଙ୍କ ମୂର୍ତ୍ତି ସ୍ଥାପିତ । ଏହା ଏକ ବିରଳ ସନ୍ନିବେଶ । କିମ୍ବଦନ୍ତୀରୁ ଜଣାଯାଏ ଯେ, ପାର୍ବତୀ ଦେବୀଙ୍କର ପ୍ରତିଷ୍ଠା ପରେ ସେବକମାନଙ୍କ ମଧ୍ୟ ପରମ୍ପରା କ୍ରମେ କେତେ ଜଣ ତାଙ୍କର ଉଗ୍ରତେଜ ସମ୍ଭାଳି ନ ପାରି ମୃତ୍ୟୁ ମୁଖରେ ପତିତ ହେବାରୁ ତାଙ୍କର ଉଗ୍ରତେଜ ପ୍ରଶମନ ନିମିତ୍ତ ଶ୍ରୀ ନୃସିଂହଙ୍କ ବିଗ୍ରହ ସ୍ଥାପିତ ହେଲା । ସମ୍ଭବତଃ ପୁରୀ ଗଜପତିଙ୍କ ଆଦେଶରେ ସେହି ମୂର୍ତ୍ତି କଟକରୁ କପିଳାସକୁ ଆଣୀତ ହୋଇଥିଲେ । ଏହି ମୂର୍ତ୍ତି ଅତି ପ୍ରାଚୀନ । ଏବେ ମଧ୍ୟ ଦେଖାଯାଏ ପାରମ୍ପରିକ ରୀତିରେ ଆରତି ସମୟରେ ପ୍ରଥମେ ଶ୍ରୀ ନୃସିଂହଙ୍କ ଆରତି କରାଯାଇ ଉକ୍ତ ଧୂପ ଦେବୀଙ୍କୁ ସମର୍ପିତ ହୋଇଥାଏ । ଅବଶ୍ୟ ଆଶ୍ୱିନ ମାସର ମହାଷ୍ଟମୀ ପର୍ବରେ ଯେତେବେଳେ ବେଢ଼ାର ବାହାର ପଟେ ପଶୁବଳି ଅଣା ହୋଇ ଦେବୀଙ୍କଠାରେ ଅର୍ପଣ କରାଯାଏ ସେତେବେଳେ ବୈଷ୍ଣବ ଧର୍ମର ଏହି ପରମାରାଧ୍ୟ ଶ୍ରୀ ନୃସିଂହ ଦେବ ନିଦ୍ରାର ଛଳନା କରନ୍ତି । ତାଙ୍କ ବିଗ୍ରହ ଉପରେ ବସ୍ତ୍ରାଚ୍ଛାଦନ କରାଯାଏ । ବର୍ଷର ଗୋଟିଏ ମାତ୍ର ଦିନ ପାଇଁ ଦେବୀଙ୍କର ଏହି ଲୀଳା ବିଷୟରେ ଶ୍ରୀ ନୃସିଂହ ଦେବ ଉଦାସୀନ ହୋଇଥାନ୍ତି । ବୈଷ୍ଣବ ଓ ଶୈବ କ୍ଷେତ୍ର ମାନଙ୍କରେ ଶାକ୍ତମାନଙ୍କର ଏତାଦୃଶ ନିଜତ୍ୱ ରକ୍ଷା ଦେଖିବାକୁ ମିଳେ । ବୌଦ୍ଧ ଓ ବୈଷ୍ଣବ ଧର୍ମର ପୁଣ୍ୟପୀଠ ଶ୍ରୀ ଜଗନ୍ନାଥ ମନ୍ଦିରରେ ବିମଳା ଦେବୀଙ୍କ ଠାରେ ବଳିପ୍ରଥାର ପ୍ରଚଳନ ଶ୍ରୀ କ୍ଷେତ୍ରର ଏକ ବୈଶିଷ୍ଟ୍ୟ ।

ପ୍ରତାପ ନରସିଂହ ଦେବଙ୍କ ଦ୍ୱାରା କପିଳାସ କ୍ଷେତ୍ରରେ ମନ୍ଦିରାଦି ନିର୍ମାଣର ପ୍ରମାଣ କପିଳାସର ଶିଳାଲିପି । ଏହି ଶିଳାଲିପି ଗୋଟିଏ ପ୍ରସ୍ତର କଳସ ଉପରେ ଖୋଦିତ । କଳସଟି କେଉଁଠାରେ ଥିଲା ତାହା ଜଣାଯାଏ ନାହିଁ । ସମ୍ଭବତଃ ଏହା ଶିଳାଲିପି ଉଦ୍ଦେଶ୍ୟରେ ନିର୍ମିତ ହୋଇଥିଲା । ଲିପିର ସମସ୍ତ ଅକ୍ଷର ଓଡ଼ିଆ ନୁହେଁ । ନାଗରାକ୍ଷର ଓ ପ୍ରାଚୀନ କୁଟିଳାକ୍ଷର ମିଶ୍ରଣରେ ଲେଖାଟି ସମ୍ପୂର୍ଣ୍ଣ । ଲିପି ପାଠ ବିଶେଷ କଠିନ ନୁହେଁ କିମ୍ବା ଲେଖା ଦୁର୍ବୋଧ ନୁହେଁ । କଳସଟି ବହୁକାଳ ଧରି ପାର୍ବତୀ ଦେବୀଙ୍କ କୋଠରି ବାହାରେ ଥୁଆ ହୋଇଥିଲା । ସାଧାରଣ ଯାତ୍ରୀଙ୍କର ଦୃଷ୍ଟି ତାହା ଉପରେ ପଡ଼େ ନାହିଁ । ଜଳବାୟୁ ପ୍ରବାହରେ ଏହା କ୍ରମେ ମଳିନ ହୋଇ ଯାଇଛି ।

କଳସଟିର ଲିପି ୩ ଭାଗରେ ବିଭକ୍ତ (କ) କଳସ ଧଡ଼ି (ଖ) କଳସ ହାଣ୍ଡି (ମଧ୍ୟ ଭାଗ ମୋଟା ଅଂଶ) ଓ (ଗ) କଳସ କପୁରି (ତଳ ଅଂଶ) ।

ଘଡ଼ରେ ୨ ଧାଡ଼ି, ହାଣ୍ଡିରେ ୬ ଧାଡ଼ି ଏବଂ ତଳ ଅଂଶରେ ୨ ଧାଡ଼ି—ଏହିପରି ସମଗ୍ର କଳଶଟିରେ ୧୦ ଧାଡ଼ି ଶିଳାଲିପି ରହିଅଛି । ନିମ୍ନରେ ଏହା ପ୍ରଦତ୍ତ ହେଲା—

(କ) ଘଡ଼ି—୧ । ସ୍ୱସ୍ତି ଦ୍ୱାପର ତ୍ରେତା କଳିଯୁଗେ ନରସିଂହ ଦେବ ଦେଉଳ କୈଳାସ ଶିଖରେ ସ୍ୱ—

୨ । ର ବଇଶାଖ ଶୁକ୍ଳ ତ୍ରଓଦଶୀ ଚନ୍ଦ୍ରବାରେ ସାହି ୧୦ ଙ୍କର ଶ୍ରୀ ନରସିଂହ ଦେବ ରଜା

(ଖ) ହାଣ୍ଡି—୧ । ସ୍ୱସ୍ତିରସ୍ତୁ ଦେବ ଓଁ ନରପତି ଶ୍ରୀମତ୍ ପୁରୁଷୋତ୍ତମ ଚରଣାଦେଶତଃ ସମର ମୁଖାନେକ

୨ । ନୃପ ଦର୍ପ ମର୍ଦ୍ଦନ ଭୁଜବଳ ପରାକ୍ରମ ପରମ ଭଟ୍ଟାରକ ଜଗନ୍ମୂଳ କାରଣ ଶ୍ରୀ ଦୁ

୩ । ର୍ଗା ପୁତ୍ର ଶ୍ରୀ ପୁରୁଷୋତ୍ତମ ପୁତ୍ର ଅପି ବସୁନ୍ଧରା ସମୁଦ୍ଧରଣ ପ୍ରବଳ ଦୋର୍ଦ୍ଦଣ୍ଡ ମହାବରାହ ମହାରାଜାଧିରାଜ

୪ । ପରମେଶ୍ୱର ସ୍ପର୍ଦ୍ଧାଢର୍ପ ବଳ ଜନ ସ୍ତମ୍ଭ ଶ୍ରୀମ(ନ)ନ୍ତ ବର୍ମ୍ମ ସମ୍ଭୂତ ବୀର ଶ୍ରୀ ନରସିଂହ ଦେବ ରାଜସ୍ୱୀ

୫ । କଇଳାସ ଶିଖରେଶ୍ୱରସ୍ୟ ନାଗନା ଗ୍ରାମପୁରଂ ପ୍ରଦତ୍ତଂ ତ ତତ୍ ଧର୍ମ୍ମ ବରୋଧଂ ନରକଂ ଯାନ୍ତି

୬ । ତତ୍ ଧର୍ମ୍ମ ପାଳନଂ ସ୍ୱର୍ଗଲୋକଂ ଗଚ୍ଛନ୍ତି ବୀର ଶ୍ରୀ ନରସିଂହ ଦେବ ସଦା ବିଜେ

(ଗ) କପୁର—୧ । ସ୍ୱସ୍ତି ଶ୍ରୀ ବୀର ନରସିଂହ ଦେବ ରଜା ୧୮ ସ୍ରାହି କୈଳାସ

୨ । ଦେବାଳକ ତୁଳସୀ ସେନାପତି ରମ୍ଭାଗ୍ରାମ ଚତୁର ସୀମାନ ଉତ୍ତଂ

---

ଏହି ଶିଳାଲିପିର ସମସ୍ତ ଶ୍ରୀ ସତ୍ୟନାରାୟଣ ରାଜଗୁରୁଙ୍କ ମତରେ ଖ୍ରୀ: ୧୨୫୨—୧୨୭୩, ରାଜା ପ୍ରଥମ ନରସିଂହ ଦେବଙ୍କ ସମୟର— ( କୋଣାର୍କ—ପ୍ରଥମ ସଂଖ୍ୟା, ସେପ୍ଟେମ୍ବର ୧୯୫୮—ପୃଷ୍ଠା ୫୦—୫୬ )

ଉଲ୍ଲିଖିତ ଶିଳା ଲେଖାରୁ ଜଣାଯାଏ ଯେ, ଶ୍ରୀ ପୁରୁଷୋତ୍ତମ ଓ ଶ୍ରୀ ଦୁର୍ଗାପୁତ୍ର, ଶ୍ରୀ ନରସିଂହ ଦେବ ରାଜା କପିଳାସର ଦେଉଳ ନିର୍ମାଣ କରାଇ ଠାକୁରଙ୍କ ଭୋଗରାଗାଦି ନିମିତ୍ତ ନାଗନା ନିକଟବର୍ତ୍ତୀ ଖ୍ରୀମପୁର (ଭୂଇଁପୁର) ଗ୍ରାମରେ ଭୂସମ୍ପତ୍ତି ଖଞ୍ଜା କରିଥିଲେ । ମନ୍ଦିର ନିର୍ମାଣର ମୁଖ୍ୟ କାରିଗର ତୁଳସୀ ସେନାପତିଙ୍କୁ ରମ୍ଭା ଗ୍ରାମ ଦାନ କରିଥିଲେ ।

ନାଗନା ଗ୍ରାମ କପିଳାସ ଠାରୁ ପ୍ରାୟ ୨୦ କିଲୋମିଟର ଦୂର । ଏହା ବ୍ରାହ୍ମଣୀ ନଦୀ କୂଳରେ ଅବସ୍ଥିତ । ଏଠାରେ ଦ୍ୱାଦଶ ଜ୍ୟୋତିର୍ଲିଙ୍ଗ ମଧ୍ୟରୁ ଏକତମ 'ନାଗନାଥ'ଙ୍କ ବହୁ ପ୍ରାଚୀନ ମନ୍ଦିର ପ୍ରତିଷ୍ଠିତ । ଓଡ଼ିଶାର ଶୈବ ରାଜାମାନେ ଏଠାରେ ମନ୍ଦିର ନିର୍ମାଣ କରାଇ ଥିଲେ । ଏଠାରେ ବ୍ରାହ୍ମଣୀ ନଦୀ ଉତ୍ତର ବାହିନୀ—ଏହା ଏକ ଅତି ପୁଣ୍ୟ ପୀଠ । ନାଗନା ଏବେ ଗୋଟିଏ କ୍ଷୁଦ୍ର ଗ୍ରାମ ହେଲେହେଁ ପୂର୍ବକାଳରେ ବିଖ୍ୟାତ ଥିଲା । ଏହାର ନିକଟରେ ଖ୍ରୀମପୁର ଗ୍ରାମ । ପୂର୍ବରେ ଏହା ଗୋଟିଏ ଗଡ଼ ଥିଲା । ଖ୍ରୀମପୁର ଅନଙ୍ଗଭୀମ ଦେବଙ୍କ ନାମରେ ନାମିତ ହୋଇଅଛି । ନାଗନା ଭୂଇଁପୁର ଅଞ୍ଚଳ ଓଡ଼ିଶା ରାଜାଙ୍କ ଶାସନାଧୀନ ଥିଲା ଏବଂ ପରେ ଢେଙ୍କାନାଳ ରାଜାଙ୍କ ଶାସନାଧୀନ ହେଲା ।

ଖ୍ରୀମପୁରର ଅନତି ଦୂରରେ ଲତାଦେଈପୁର ଶାସନ ନିକଟରେ ବ୍ରାହ୍ମଣୀ ନଦୀ କୂଳରେ ଗୋଟିଏ ଅତି ପ୍ରାଚୀନ ଶିବ ମନ୍ଦିର ଅବସ୍ଥିତ । ଏଥିରେ ହିରଣ୍ୟଗର୍ଭ ଶିବଲିଙ୍ଗ 'ଅନକୋଟୀଶ୍ୱର' ବିରାଜିତ । ଏହା ମଧ୍ୟ ସେହି ଶୈବ ନରପତି ମାନଙ୍କର କୀର୍ତ୍ତି । ଖ୍ରୀମନଗରୀ ଦଣ୍ଡପାଟ ଗଙ୍ଗବଂଶୀ ରାଜାମାନଙ୍କର ପଶ୍ଚିମ ସୀମା ବୋଲି ମାଦଳା ପାଞ୍ଜିରେ ଲେଖା ଅଛି । ସେଠାରେ ରାମଚଣ୍ଡୀଙ୍କର ଓ କନକେଶ୍ୱର ଶିବଙ୍କର ପ୍ରାଚୀନ ମନ୍ଦିରମାନ ବିଦ୍ୟମାନ । ଆଜିକାଲି ଯେଉଁଠି ଧଳପୁର (ନୂଆ ଭଗୀରଥି ପୁର) ଗ୍ରାମ ଅବସ୍ଥିତ,

---

ଓଡ଼ିଶା ଗେଜେଟିଅର (ଢେଙ୍କାନାଳ)—ପୃଷ୍ଠା ୪୩୨—୪୩୭ ଓ ଅନ୍ୟାନ୍ୟ ଐତିହାସିକ ମାନଙ୍କ ମତରେ ଏ ଶିଳାଲିପିର ସମୟ ତୃତୀୟ ନରସିଂହ ଦେବଙ୍କର ରାଜତ୍ୱ କାଳରେ । ହଣ୍ଟର ସାହେବଙ୍କ ମତରେ ଏହି ନରସିଂହ ଦେବଙ୍କ ରାଜତ୍ୱକାଳ ଖ୍ରୀ : ୧୩୦୭—୧୩୨୭ । ଶ୍ରୀ କେଦାରନାଥ ମହାପାତ୍ରଙ୍କ ମତରେ ଏହି ମନ୍ଦିରର ନିର୍ମାତା ନରସିଂହ ଦେବ (୧) ଏବଂ ତାଙ୍କ ରାଜତ୍ୱକାଳ ୧୨୩୭ ରୁ ୧୨୬୪ ଖ୍ରୀଷ୍ଟାବ୍ଦ ("The Jagannath Temple, in Eastern India' -1977)

ତାହାହିଁ ପୂର୍ବେ ଭୀମନଗରୀ ଦଣ୍ଡପାଟ ଥିଲା । ଏହା ବହୁ ପ୍ରାଚୀନ ତମ୍ବାପଟା ସନନ୍ଦ, ପ୍ରାଚୀନ ମୁଦ୍ରା, ମୂର୍ତ୍ତିମାନଙ୍କରୁ ପ୍ରମାଣିତ ହୋଇଅଛି ।

କନକେଶ୍ବର ମହାଦେବଙ୍କ ମନ୍ଦିର ନିକଟରେ ବ୍ରାହ୍ମଣୀ କୂଳରେ ପ୍ରାଚୀନ 'ଏକଘରିଆ' ଗ୍ରାମ । ଏହି ଅଞ୍ଚଳ ପୂର୍ବେ ଗୋଟିଏ ନଗର ଥିଲା ଏବଂ ଏଠାକୁ ଓଡ଼ିଶାର ବହୁ ବିଶିଷ୍ଟ ବ୍ୟକ୍ତି ଆସି ବାସକରୁଥିଲେ । କବି ଘନକୃଷ୍ଣଙ୍କ 'ରସ ବିନୋଦ'ରୁ ଦେଖାଯାଏ—

ଏ ଗ୍ରନ୍ଥ ଯୋଡ଼ିବାର ବେଳେ । ଘର ବ୍ରାହ୍ମଣୀ ନଦୀ କୂଳେ ॥
ଏକଘରିଆ ନାମ ଦେଶ । କନକେଶ୍ବର ଲିଙ୍ଗ ପାଶ ॥
ତହିଁ ମୋହର ନିଜ ବାସ । କରୁଣା କଲେ ପୀତବାସ ॥

ବ୍ରାହ୍ମଣୀ ନଦୀ କୂଳ, କନକେଶ୍ବର ଲିଙ୍ଗ ଓ ଏକଘରିଆ ଗ୍ରାମର ଏକତ୍ର ସ୍ଥିତି ହେତୁ ଏହା ଯେ ଘନକୃଷ୍ଣଙ୍କର ବାସସ୍ଥାନ, ଏଥିରେ ସନ୍ଦେହର ଅବକାଶ ନାହିଁ । ଏପରି ସଂଯୋଗ ଅନ୍ୟତ୍ର ଦେଖାଯାଏ ନାହିଁ । ଏ ବିଷୟରେ ମତାନୈକ୍ୟ ଥିଲେ ମଧ୍ୟ; ରସବିନୋଦ ରଚନା କାଳରେ ଘନକୃଷ୍ଣ ଢେଙ୍କାନାଳ ଅନ୍ତର୍ଗତ ଏକଘରିଆ ଗ୍ରାମରେ ଥିବା ସୁପ୍ରମାଣିତ । ରାମଚଣ୍ଡୀଙ୍କ ମନ୍ଦିର ନିକଟବର୍ତ୍ତୀ ନଦୀ କୂଳରୁ ଓ ନଦୀ ଗର୍ଭରୁ ବହୁ ପ୍ରାଚୀନ ମୁଦ୍ରା, ଭଗ୍ନ ମୂର୍ତ୍ତି, ଭଗ୍ନ ମୃତ୍ପାତ୍ର ଓ ସୁନ୍ଦର ବିଗ୍ରହମାନ ଖୋଦନ ଦ୍ୱାରା ଆବିଷ୍କୃତ ହୋଇଥିଲା । ସ୍ୱର୍ଗୀୟ ସୁର ପ୍ରତାପଙ୍କ ରାଜତ୍ୱକାଳରେ ସ୍ୱର୍ଗୀୟ ରାମଚନ୍ଦ୍ର ନନ୍ଦ ଓ ସ୍ୱର୍ଗୀୟ ମୃତ୍ୟୁଞ୍ଜୟ ରଥଙ୍କ ଦ୍ୱାରା ଏ ବିଷୟରେ ବହୁ ତଥ୍ୟ ସମ୍ବଳିତ ଲେଖା ପ୍ରକାଶିତ ହୋଇଥିଲା ।

ପ୍ରତାପ ନରସିଂହ ଚତୁର୍ଦ୍ଦଶ ଶତାବ୍ଦୀର ପ୍ରଥମ ଭାଗରେ ରାଜତ୍ୱ କରିଥିଲେ । ହଣ୍ଟର ସାହେବଙ୍କ ମତରେ ତାଙ୍କର ରାଜତ୍ୱକାଳ ଖ୍ରୀ: ୧୩୦୭ ରୁ ୧୩୨୭ । ସେ ଜଣେ ପ୍ରତାପଶାଳୀ ନରପତି ଥିଲେ । ଉତ୍କଳରେ ଏକାଧିକ ନରସିଂହ ଦେବ ରାଜତ୍ୱ କରିଥିଲେ । ସେଥିରୁ ଜଣେ କୋଣାର୍କ ନିର୍ମାତା ଲାଙ୍ଗୁଳା ନରସିଂହ, ଜଣେ ଅଠରନଳା ସେତୁ ନିର୍ମାତା ନରସିଂହ, ଅନ୍ୟ ଜଣେ କପିଳାସ ମନ୍ଦିର ପ୍ରତିଷ୍ଠାତା ପ୍ରତାପ ନରସିଂହ । ଏହାଙ୍କ ପିତା ପୁରୁଷୋତ୍ତମ ଓ ମାତା ଦୁର୍ଗାଦେବୀ । କାଞ୍ଚି-ବିଜୟୀ ପୁରୁଷୋତ୍ତମ ଏହାଙ୍କ [illegible] । [illegible]

ପୂର୍ବ ଶ୍ରୀ ପ୍ରତାପରୁଦ୍ର ଦେବ ଶ୍ରୀ ଚୈତନ୍ୟ ଦେବଙ୍କର ପୁରୀ ଅବସ୍ଥାନ କାଳରେ ଉତ୍କଳରେ ଗଜପତି ଥିଲେ । କେହି କେହି ଏହାଙ୍କୁ କପିଳାସ ମନ୍ଦିର ନିର୍ମାତା ବୋଲି କହିଥାନ୍ତି । ଅବଶ୍ୟ ମହାରାଜା ପ୍ରତାପରୁଦ୍ର ଦେବ କିଛିକାଳ କପିଳାସରେ ବାସ କରିଥିଲେ । ପ୍ରତ୍ୟହ ଶ୍ରୀ ଜଗନ୍ନାଥ ଦର୍ଶନ ନ କଲେ ସେ ଅନ୍ନ ଗ୍ରହଣ କରୁ ନ ଥିଲେ । ଏଥିପାଇଁ ମନ୍ଦିର ଗାତ୍ରରେ ଗୋଟିଏ ଜଗନ୍ନାଥ (ଦେଉଳ ଉପରେ ଦଧି ନଉତିର ନିମ୍ନ ଦେଶରେ) ମୂର୍ତ୍ତି ପ୍ରତିଷ୍ଠା କରାଯାଇଥିଲା । ଏ ବିଗ୍ରହ ଅଦ୍ୟାବଧି ସେଠାରେ ରହିଅଛି ।

## କପିଳାସ ମନ୍ଦିର

ଶ୍ରୀ ଚନ୍ଦ୍ରଶେଖରଙ୍କ ମନ୍ଦିର ପର୍ବତର ମେଖଳାରେ ପ୍ରାୟ ୧୫୦୦ ଫୁଟ ଉଚ୍ଚରେ ଅବସ୍ଥିତ । ଆରୋହଣ ପାଇଁ ନିର୍ମିତ ପାବଚ୍ଛଗୁଡ଼ିକ ଯେଉଁଠାରେ ଶେଷ ହୋଇଛି ସେଠାରୁ ପ୍ରାୟ ୨୫ ହାତ ଦୂରରେ ପୂର୍ବକୁ ଶ୍ରୀ ମନ୍ଦିରର ସିଂହଦ୍ୱାର । ମଠର ରାସ୍ତାଟି ଠିକ୍ ଏହି ସିଂହଦ୍ୱାର ପର୍ଯ୍ୟନ୍ତ ଆସିଅଛି । ରାସ୍ତାର ବାମ ପାର୍ଶ୍ୱରେ ପ୍ରାୟ ୩୦ ଫୁଟ ଉଚ୍ଚରେ ଢେଙ୍କାନାଳ ରାଜାଙ୍କର ଗୋଟିଏ କ୍ଷୁଦ୍ର ପ୍ରାସାଦ ଥିଲା । ତାହା ବର୍ତ୍ତମାନ ବାରିକ ମିର୍ଦ୍ଧା ବିଭାଗର ଅଧୀନ । ତାହାର କିଞ୍ଚିତ୍ ନିମ୍ନ ଭାଗରେ ଯାତ୍ରୀମାନଙ୍କ ରହିବା ପାଇଁ ପାନ୍ଥଶାଳା ଅଛି । ଏହି ପାନ୍ଥଶାଳାକୁ ଲାଗି ପୂର୍ବ ଦିଗରେ ଠାକୁରଙ୍କର ସରଘର ଓ ତାର ପୂର୍ବରେ ପାର୍ବତୀ ଦେବୀଙ୍କର ମନ୍ଦିର । ଏ ସବୁ ପକ୍କା ଘର । ଏହାର ୧୦।୧୨ ଫୁଟ ନିମ୍ନରେ ମନ୍ଦିର ଅବସ୍ଥିତ ।

ମନ୍ଦିରର ଉଚ୍ଚତା ପ୍ରାୟ ୭୦ ଫୁଟ । ଏହାର ମୁଖ ପୂର୍ବ ଦିଗରେ । ସମ୍ମୁଖରେ ଗୋଟିଏ କାଷ୍ଠନିର୍ମିତ ମଣ୍ଡପ ଅଛି । ମଣ୍ଡପର ନିର୍ମାଣ କୌଶଳ ତତ୍କାଳୀନ ଶିଳ୍ପ ରୁଚିଭୁଷାର ପରିଚାୟକ । ମନ୍ଦିରର ମୂଳଭିତ୍ତିଠାରୁ ଏହି ମଣ୍ଡପର ଉଚ୍ଚତା ପ୍ରାୟ ୨ ଫୁଟ । ଏଠାରେ ଭୋଗ ବଣ୍ଟନ, ଭଜନ, କୀର୍ତ୍ତନ ପ୍ରଭୃତି ହୋଇଥାଏ । ଠାକୁରଙ୍କ ବାମ ପାର୍ଶ୍ୱରେ ପୟୋଃମୃତ କୁଣ୍ଡ ଓ ଦକ୍ଷିଣ ପାର୍ଶ୍ୱରେ ପାପନାଶିନୀ କୁଣ୍ଡ ବିଦ୍ୟମାନ । ଗୋଟିଏ ସଂକୀର୍ଣ୍ଣ ସମତଳ ପାର୍ବତ୍ୟ ଅଂଶରେ ମନ୍ଦିରର ମୂଳଭିତ୍ତି ସ୍ଥାପିତ । ମନ୍ଦିରଟି ପୂର୍ବାଭିମୁଖୀ । ଏହାର କାରଣ ଏହି ସିଂହଦ୍ୱାର ପାର୍ବତ୍ୟ ପାବଚ୍ଛ ଓ ମଠର ରାସ୍ତା ଆଡ଼କୁ ରହିଛି । ସିଂହଦ୍ୱାର ଅତିକ୍ରମ କଲେ ମନ୍ଦିର ପ୍ରାଙ୍ଗଣରେ ଥିବା ଘଣ୍ଟବେଢ଼ା ନିକଟରେ ପହଞ୍ଚିବାକୁ

ହୁଏ । ମଣ୍ଡପର ନିମ୍ନଦେଶରେ ସମ୍ମୁଖଭାଗରେ ପାପନାଶିନୀ କୁଣ୍ଡ ଓ ତାର କିଞ୍ଚିତ୍ ନିମ୍ନରେ ମଡ଼ଚ୍ଛା କୁଣ୍ଡ । ଏହି କୁଣ୍ଡରେ ବନ୍ଧ୍ୟା ମଡ଼ଚ୍ଛା ନାରୀମାନେ ପୁତ୍ର କାମନା କରି ଗଙ୍ଗା ସ୍ନାନ କରିଥାନ୍ତି । ଊର୍ଦ୍ଧ୍ୱ ଦେଶରୁ ପ୍ରବାହିତ ଜଳଧାର ଏଠାରେ ପଡ଼ିବାର ସୁବ୍ୟବସ୍ଥା କରାଯାଇଅଛି । ମଣ୍ଡପର କିଞ୍ଚିତ୍ ଦୂରରେ ସିଂହଦ୍ୱାରକୁ ଲାଗି ଗୋଟିଏ କ୍ଷୁଦ୍ରାବୟବ ପ୍ରାଚୀର । ସମଗ୍ର ମନ୍ଦିର ପ୍ରାଙ୍ଗଣ ପଥର ଚଟାଣ ଦ୍ୱାରା ସଜ୍ଜିତ ହୋଇଅଛି ।

ଶିବଲିଙ୍ଗଙ୍କ ସମ୍ମୁଖରେ ମୁଖ୍ୟ ପ୍ରବେଶ ଦ୍ୱାର ଓ ବୃଷଭ ସ୍ତମ୍ଭ । ଯଜ୍ଞ-ମଣ୍ଡପର ବାମ ପାର୍ଶ୍ୱରେ ମନ୍ଦିରକୁ ଗୋଟିଏ ପ୍ରବେଶ ଦ୍ୱାର ଅଛି । ଏହା ଅପେକ୍ଷାକୃତ ସଂକୀର୍ଣ୍ଣ । ଯାତ୍ରା ସମୟରେ ଏହି ପଥରେ ଯାତ୍ରୀମାନେ ଦେବ ଦର୍ଶନାନ୍ତେ ବାହାରକୁ ଆସିଥାନ୍ତି ।

ଶ୍ରୀ ଚନ୍ଦ୍ରଶେଖରଙ୍କ ମନ୍ଦିରରେ କୌଣସି ପ୍ରକାର ଶିଳ୍ପକାରୁକାର୍ଯ୍ୟ ନାହିଁ । ଏହାର ଏକାଂଶ ଜଗମୋହନ ଓ ଅନ୍ୟଟି ମୁଖ୍ୟ ପୀଠ । ପୀଠଟି ଜଗମୋହନ-ଠାରୁ ନିମ୍ନତର । ଶିବଙ୍କର ଶକ୍ତି ସେତେ ବଡ଼ ନୁହେଁ । ପୀଠର ଅଭ୍ୟନ୍ତର ମଧ୍ୟ ସଂକୀର୍ଣ୍ଣ । ଏକ ସମୟରେ ୪।୫ ଜଣରୁ ଅଧିକ ଲୋକ ସେଠାରେ ବସିବା ବା ଦଣ୍ଡାୟମାନ ହୋଇ ସ୍ତୁତି ପାଠ କରିବା ସମ୍ଭବ ନୁହେଁ । ଏଣୁ ଯାତ୍ରା ପର୍ବ ସମୟରେ ଭିତରକୁ ଯିବା ଆସିବା କଷ୍ଟକର ହୋଇଥାଏ ।

ମନ୍ଦିର ଗାତ୍ରରେ ଗଣେଶ, କାର୍ତ୍ତିକେୟ ଓ ପାର୍ବତୀ ମୂର୍ତ୍ତି ପାର୍ଶ୍ୱଦେବତା ରୂପେ ବିରାଜମାନ । ମୂର୍ତ୍ତିଗୁଡ଼ିକ କ୍ଷୁଦ୍ରାବୟବ ବିଶିଷ୍ଟ ହେଲେହେଁ ଗଠନ ପ୍ରଣାଳୀ ସୁନ୍ଦର । ପାର୍ବତୀ ଦେବୀଙ୍କର ସ୍ୱତନ୍ତ୍ର ମୂର୍ତ୍ତି ପୃଥକ୍ ଭାବରେ ପ୍ରତିଷ୍ଠିତ ଥିବାରୁ ମୂଳ ମନ୍ଦିର ଗାତ୍ରରେ ଥିବା ପାର୍ଶ୍ୱଦେବତାଙ୍କୁ ପୂଜକମାନେ ଗଙ୍ଗା ଦେବୀ ବୋଲି ଭ୍ରମବଶତଃ କହିଥାନ୍ତି । ସମ୍ମୁଖସ୍ଥ ମଣ୍ଡପ ଓ ଭୋଗ ମଣ୍ଡପର ବେଢ଼ା ନାହିଁ । ଏହା ଖୋଲା ଥାଏ । ଏଠାରେ ଥିବା ବୃଷଭ ପରବର୍ତ୍ତୀ କାଳରେ ଭୀମନଗରୀରୁ ଆନୀତ ଏବଂ ଏଠାରେ ସ୍ଥାପିତ । ଏହା ଦେହରେ କେତେକ ଲିପି ମଧ୍ୟ ଦେଖାଯାଏ । ମାତ୍ର ଏହାର ମନ୍ଦିର ସହିତ ବିଶେଷ ସମ୍ପର୍କ ଥିବା ପରି ଜଣାପଡ଼େ ନାହିଁ ।

ଶ୍ରୀ ଚନ୍ଦ୍ରଶେଖରଙ୍କ ମନ୍ଦିର ପୂର୍ବାଭିମୁଖରେ କଚ୍ଛପପୃଷ୍ଠ ପାବଚ୍ଛ ଶ୍ରେଣୀ ଅତିକ୍ରମ କଲେ କିଞ୍ଚିତ୍ ଊର୍ଦ୍ଧ୍ୱ ଦେଶରେ ଆଉ ଦୁଇ ଗୋଟି ମନ୍ଦିର ବିଦ୍ୟମାନ ।

ଏଥିରୁ ବାମ ପାର୍ଶ୍ୱରେ ଥିବା ମନ୍ଦିରଟି ଆଧୁନିକ । ଏଥିରେ ଶ୍ରୀ ନାରାୟଣଙ୍କ ଶ୍ରୀବିଗ୍ରହ ସ୍ଥାପିତ ହୋଇଅଛି । ବିଗ୍ରହର ପାଦପ୍ରାନ୍ତରୁ ଜଳଧାର ନିର୍ଗତ ହୋଇ ନିମ୍ନସ୍ଥ କୁଣ୍ଡରେ ପତିତ ହେଉଅଛି ଏବଂ ସେଠାରୁ ଭିତରେ ଭିତରେ ଗତିକରି ଭୋଗମଣ୍ଡପ ନିକଟରେ ଆତ୍ମପ୍ରକାଶ କରିଅଛି । ପୂର୍ବରୁ କୁହାଯାଇଛି ଯେ, ଏହି ମନ୍ଦିର ସ୍ୱର୍ଗୀୟ ରାଜା ଯାନବିନ୍ଦ୍ର ମହୀନ୍ଦ୍ର ବାହାଦୂରଙ୍କ ରାଣୀ ଅନ୍ନପୂର୍ଣ୍ଣା ଦେବୀଙ୍କ ଦ୍ୱାରା ନିର୍ମିତ ହୋଇଥିଲା । କଳା ମୁଗୁନି ପଥରରେ ନିର୍ମିତ ଚତୁର୍ଭୁଜ ନାରାୟଣ ମୂର୍ତ୍ତି ଅତ୍ୟନ୍ତ କମନୀୟ । ମୂର୍ତ୍ତି ଏପରି ସ୍ଥାପିତ ଯେ, ତାଙ୍କର ପାଦରୁ ଗଙ୍ଗା ନିର୍ଗତା ହେଲା ପରି ପ୍ରତୀୟମାନା; କବିଙ୍କର ବର୍ଣ୍ଣନା—

"ବିଷ୍ଣୁ ନଖ କୋଣେ ଏ ଥିଲି
ବାମନାବତାରେ ଭଗୀରଥ ଆଣିଲି"

ସ୍ମୃତି ପଥାରୂଢ଼ ହୋଇଯାଏ ।

ବିଷ୍ଣୁ ପାଦାଗ୍ର ସମ୍ଭୂତେ ଗଙ୍ଗେ ତ୍ରିପଥ ଗାମିନୀ
ଧର୍ମ ଦ୍ରବୀତି ବିଖ୍ୟାତେ ପାପଂ ମେ ହର ଜାହ୍ନବୀ ।

ଏହି ଶ୍ଳୋକ ପାଠ କରି ଭକ୍ତମାନେ ଏହି ପବିତ୍ର ଜଳ ଶିରରେ ଧାରଣ କରିଥାନ୍ତି ।

ଅନ୍ୟ ମନ୍ଦିରଟିର ନାମ ବିଶ୍ୱନାଥ ମନ୍ଦିର ବା ବିଶ୍ୱେଶ୍ୱର ମନ୍ଦିର । ଏହା ନାରାୟଣଙ୍କ ମନ୍ଦିରର ପଶ୍ଚିମରେ ଅଳ୍ପ ଦୂରରେ ଅବସ୍ଥିତ ଏବଂ ଅପେକ୍ଷାକୃତ ଉଚ୍ଚରେ ଓ ଅତି ପୁରାତନ । ଏହାର ମରାମତି ଯଥାମତ ହେଉ ନ ଥିବାରୁ ସତେ ଯେପରି ବହୁ ଦିନରୁ ଅନାଦୃତ ହୋଇ ପଡ଼ିଅଛି । ଏହା ଚନ୍ଦ୍ରଶେଖରଙ୍କ ମନ୍ଦିରର ପୂର୍ବବର୍ତ୍ତୀ । ଏହା କାହାଦ୍ୱାରା ନିର୍ମିତ ହୋଇଥିଲା ଏ ବିଷୟରେ ନିର୍ଦ୍ଦିଷ୍ଟ ବିବରଣୀ ମିଳି ନାହିଁ ।

ଉଲ୍ଲିଖିତ ମନ୍ଦିର ଦ୍ୱୟ ମଧ୍ୟରେ ପର୍ବତର ବନ୍ଧୁର ଭିତିରୁ ନିର୍ଝର ଜଳ ନିର୍ଗତ ହୋଇ କ୍ରମେ ନିମ୍ନକୁ ଗତି କରି, ପାବଚ୍ଛ ଶ୍ରେଣୀ ଅତିକ୍ରମ କରି ମଣିକର୍ଣ୍ଣିକା କୁଣ୍ଡରେ ପଡ଼ିଅଛି । ଏହି କୁଣ୍ଡର ଜଳ ସ୍ନାନପାଇଁ ବିଶେଷ ଉପଯୋଗୀ । ଏହି ଜଳ ଉପରେ ଥିବା ରାସ୍ତା ବାଟେ ଡାକବଙ୍ଗଳାକୁ ନିଆଯାଇଅଛି । ସ୍ଥୂଳତଃ ଏହି ସବୁ ନିର୍ଝର ଜଳରାଶି ପାବଚ୍ଛ ନିର୍ମିତ ହେବାର କେତେ କାଳ ପୂର୍ବରୁ ଅବାଧ ଗତିରେ ନିମ୍ନକୁ ପ୍ରବାହିତ ହେଉଥିଲା । କାଳକ୍ରମେ ପାବଚ୍ଛ ନିର୍ମାଣ ସମୟରେ

ଶିଳ୍ପୀମାନେ ନମ୍ର ଦେଶରେ ଜଳ ପ୍ରବାହର ଗତି ନିୟନ୍ତ୍ରଣ କରି ଦେଇଛନ୍ତି । ଏହା ଅମଗଡ଼ରେ ପ୍ରବାହିତ ହୋଇ ଭୀମ ଲଙ୍ଗଳ ସିଆରରେ ପଡ଼ୁଅଛି । ଭୀମ ଲଙ୍ଗଳ ସିଆର ଦୁଇ ପାର୍ଶ୍ୱରେ ଉଚ୍ଚ ପର୍ବତ । ମଧ୍ୟବର୍ତ୍ତୀ ଗହ୍ୱରର କେଉଁଠି ସାଧାରଣ ବେଗରେ କେଉଁଠି ବା ପ୍ରପାତ ସୃଷ୍ଟିକରି କଳକଳ ନାଦରେ ଜଳରାଶି ଗଡ଼ିକରି ପର୍ବତର ପାଦ ଦେଶରେ ଲୁପ୍ତ ହୋଇଅଛି । ଏହାହିଁ ବନ ପ୍ରକୃତିର ସ୍ୱାଭାବିକ ଶ୍ରୀ ।

ସିଂହଦ୍ୱାର ନିକଟରେ ଗୋଟିଏ ଉଚ୍ଚ ପୀଡ଼ ଉପରେ ଦୁଇଗୋଟି ମୂର୍ତ୍ତି ସ୍ଥାପିତ—ଗୋଟିଏ ଭୈରବ ଓ ଅନ୍ୟଟି ଚାମୁଣ୍ଡା—ଉଭୟ ବିଗ୍ରହ କଳା ମୁଗୁନି ପଥରରେ ଖୋଦିତ । ଏହି ମୂର୍ତ୍ତିଗୁଡ଼ିକର ଶିଳ୍ପକୃତିତ୍ୱ ପ୍ରଶଂସନୀୟ ।

ଶ୍ରୀ ଚନ୍ଦ୍ରଶେଖରଙ୍କ ମନ୍ଦିରର ନିର୍ମାଣ କାଳ ଓ ନିର୍ମାତାଙ୍କ ସମ୍ବନ୍ଧରେ କପିଳାସରୁ ସଂଗୃହୀତ ଶିଳାଲେଖାହିଁ ପ୍ରମାଣ । ଏହି ଶିଳାଲେଖ ବିଷୟ ଏଥି ପୂର୍ବରୁ ଲିପିବଦ୍ଧ କରାଯାଇଛି । କୈଳାସର ଚନ୍ଦ୍ରଶେଖରଙ୍କ ମନ୍ଦିର ଅନନ୍ତ ବର୍ମନ ବଂଶୋଦ୍ଭବ ନରସିଂହ ଦେବଙ୍କ ଦଶ ଅଙ୍କରେ ନିର୍ମିତ ହୋଇଥିଲା । ଏହି ନରସିଂହ ଦେବଙ୍କ ରାଜତ୍ୱକାଳ ୧୩୨୮—୧୩୫୨ ଖ୍ରୀଷ୍ଟାବ୍ଦ । ତାଙ୍କର ଦଶମ ଅଙ୍କ ଅର୍ଥାତ୍ ୧୩୩୫—୩୬ ସାଲରେ ମନ୍ଦିର ନିର୍ମାଣ କରାଯାଇଥିଲା । କପିଳାସରେ ଥିବା ଶିଳାଲିପିରୁ ଓ ମାଦଳା ପାଞ୍ଜିରୁ ଏହା ପ୍ରମାଣିତ ହୋଇଅଛି ।

## ଶ୍ରୀ ଶେଖରେଶ୍ୱରଙ୍କ ଭୂମି ବୃତ୍ତି ଓ ଭୋଗ

ପୂର୍ବରୁ ସୂଚିତ ହୋଇଅଛି, ମନ୍ଦିର ନିର୍ମାତା ନରସିଂହ ଦେବ ପ୍ରତିଷ୍ଠିତ ଦେବତାଙ୍କ ଭୋଗ ଓ ମନ୍ଦିରର ପରିଚାଳନା ପାଇଁ ପ୍ରଚୁର ନିଷ୍କର ଭୂମି ଖଞ୍ଜା କରିଥିଲେ । ଠାକୁରଙ୍କ ସେବକମାନଙ୍କୁ 'ଚନ୍ଦ୍ରାପନ୍ତୀ' କୁହାଯାଏ । ଏହି ଜାତିର ଲୋକ ଢେଙ୍କାନାଳରେ ତଥା ସମଗ୍ର ଉତ୍କଳରେ ଏହି ଦେଓଗାଁରେ ବହୁ-କାଳରୁ ବସବାସ କରି ଶ୍ରୀ ଚନ୍ଦ୍ରଶେଖରଙ୍କର ସେବାରେହିଁ ବଂଶପରମ୍ପରା କ୍ରମେ ନିଯୁକ୍ତ ହୋଇ ଆସୁଛନ୍ତି । ଏମାନେ ଆଦିବାସୀ । ଏ ଜାତି ଅନ୍ୟ କୁତ୍ରାପି ଦେଖାଯାନ୍ତି ନାହିଁ । ଭୁବନେଶ୍ୱରରେ ବଡ଼ୁ ଓ ଶ୍ରୀ ଜଗନ୍ନାଥଙ୍କର ପୁରୁଷୋତ୍ତମ କ୍ଷେତ୍ରରେ ଦଇତାପତିମାନଙ୍କ ପରି କପିଳାସର ଚନ୍ଦ୍ରାପନ୍ତୀ ଏହି ଧାମର ବିଶେଷତ୍ୱ ।

ଠାକୁରଙ୍କ ଭୋଗ ରାନ୍ଧିବା ଓ ପୂଜା ପାଇଁ ବ୍ରାହ୍ମଣମାନେ ବହୁକାଳରୁ ନିଯୁକ୍ତ ହୋଇ ଆସିଛନ୍ତି । ଚନ୍ଦନ ଘଷିବା, ଫୁଲ, ବେଲପତ୍ର ଯୋଗାଇବା, ମନ୍ଦିରର ବାହାର ଓ ଭିତର ମାର୍ଜନ କରିବା ଚନ୍ଦ୍ରାପତ୍ରୀମାନଙ୍କର ମୁଖ୍ୟ କାର୍ଯ୍ୟ । ଏମାନେ ମଧ୍ୟ ଶିବଙ୍କ ଉପରେ ଅଭିଷେକ କରିଥାନ୍ତି । ମନ୍ଦିରବେଢ଼ାରେ ଯାତ୍ରୀମାନେ ଏହାଙ୍କ ହସ୍ତରୁ ପ୍ରସାଦ ଗ୍ରହଣ କରିଥାନ୍ତି । ଏ ଜାତିହିଁ ଶ୍ରୀ ଚନ୍ଦ୍ରଶେଖରଙ୍କର ଆଦିମ ସେବକ, ଏ ବିଷୟରେ ସନ୍ଦେହର ଅବକାଶ ନାହିଁ ।

ମନ୍ଦିର ମଧ୍ୟରେ ଶିବଙ୍କର ପୂଜାରେ ବିଲ୍ୱପତ୍ର ଓ ତୁଳସୀ ବ୍ୟବହୃତ ହୋଇ ଭୋଗ ଅର୍ପଣ କରାଯାଉ ଥିବାରୁ ଏହାକୁ ବିଭିନ୍ନ ଧର୍ମାବଲମ୍ବୀମାନେ ଗ୍ରହଣ କରିବାରେ କୌଣସି ଆପତ୍ତି ନାହିଁ । ଶମ୍ଭୁକ୍ଷେତ୍ରର ଶିବପ୍ରସାଦ ଭୁବନେଶ୍ୱରର ପ୍ରସାଦ ପରି ସମସ୍ତଙ୍କର ଗ୍ରହଣୀୟ ।

ପୁରୁଷୋତ୍ତମ କ୍ଷେତ୍ରରେ ବଡ଼ ଦେଉଳରେ ଯେପରି ତିନି ଧୂପ ଓ ପାଞ୍ଚ ଅବକାଶ ହୋଇଥାଏ କପିଳାସରେ ମଧ୍ୟ ଠିକ୍ ସେହିପରି ପ୍ରତ୍ୟହ ଧୂପ ଅବକାଶ-ମାନ ରୀତିବଦ୍ଧରେ କରାଯାଇଥାଏ । ଭୁବନେଶ୍ୱରସ୍ଥ ଲିଙ୍ଗରାଜଙ୍କର ସମସ୍ତ ପ୍ରସିଦ୍ଧ ଯାତ୍ରା ଏଠାରେ ମଧ୍ୟ ମହାସମାରୋହରେ ଅନୁଷ୍ଠିତ ହୁଏ ।

## ନିତ୍ୟ ଭୋଗର ତାଲିକା—

| | | |
|---|---|---|
| ସକାଳ | ଘ ୬ ଣ୍ଟା | —ଜୟ ମଙ୍ଗଳ ଆଳତି |
| ସକାଳ | ଘ ୯ ଣ୍ଟା | ପ୍ରସାଦ—ଖେଚେଡ଼ି, ଡାଲି, ଅନ୍ନ, କାନିକା ଓ ଚକା |
| ଦିବା | ଘ ୧ ଣ୍ଟା | ଧୂପ—ଅନ୍ନ, ଖିରି, ପୁଳି, ବ୍ୟଞ୍ଜନ ( ତରକାରି ), ଖଟା ଓ ଖେଚେଡ଼ି |
| ସନ୍ଧ୍ୟା | ଘ ୬ ଣ୍ଟା | ନୈବେଦ୍ୟପଣା—ସନ୍ଧ୍ୟା ଆଳତି |
| ରାତ୍ରି | ଘ ୮ ଣ୍ଟା | ଅନ୍ନ, ଡାଲି, ତରକାରି |

ଦୈନିକ ଚାଉଳ···ପ୍ରାୟ ୨୫ କେଜି
ଡାଲି···୧ କେଜି

ମନ୍ଦିରରେ ପାକ କରାଯାଉଥିବା କୋଠ ଭୋଗ ମଧ୍ୟରୁ ବିଭିନ୍ନ ମଠମାନଙ୍କୁ ପ୍ରସାଦ ପଠାଯାଏ । ଏହା ସେମାନଙ୍କ ପାଇଁ ଖଞ୍ଜା ଯାଇଅଛି । ଏ ସବୁ ଖଇରାତ ଭୋଗର ଅନ୍ତର୍ଗତ ।

୧ । ଦଣ୍ଡୀ ବ୍ରହ୍ମଚାରୀ ମଠ--ବୃଦ୍ଧେଶ୍ୱରଙ୍କ ନିକଟବର୍ତ୍ତୀ ।

୨ । ହରିହର ମଠ—( ଏହି ମଠର ମଧ୍ୟ ସ୍ୱତନ୍ତ୍ର ଲାଖରାଜ ଜମି ବିଧାରପୁର ଓ ତାଳସିଂହା ମାର୍ଥାପୁରରେ ଅଛି ।)

୩ । ବାସୁଦାସ ମଠ—ମନ୍ଦିରର ଠିକ୍ ନିମ୍ନରେ

୪ । ପଦ୍ମପାଦ ବା ଗୁମ୍ଫା ମଠ—ତାହାଠାରୁ ଆହୁରି ନିମ୍ନରେ । ପାହାଚ ଆରୋହଣ କଲାବେଳେ ଦକ୍ଷିଣ ଦିଗରେ—ଭୀମ ଲଙ୍ଗଳ ସିଆରର କିଞ୍ଚିତ୍ ଊର୍ଦ୍ଧ୍ୱରେ । ଏଠାରେ କଦଳୀ, ଆମ୍ବ, ପଣସ ଓ ଅନ୍ୟାନ୍ୟ କେତେକ ଫଳ ବୃକ୍ଷ ମଧ୍ୟ ଅଛି ।

ବାସୁଦେବ ମଠରେ ଜନୈକ ଗୁଜରାଟୀ ସାଧୁ ଅନେକ ଧନ ରଖି କେତେକ ଗୁଡ଼ିଏ ଘର ଓ ସୁରମ୍ୟ ଉଦ୍ୟାନ ନିର୍ମାଣ କରାଇଥିଲେ । ତାଙ୍କର ଦେହତ୍ୟାଗ ପରେ ତତ୍ ଶିଷ୍ୟ ରାମଦାସ ବାବାଜୀ ମଧ୍ୟ କେତେକ ଉନ୍ନତି କରାଇ ଅଳ୍ପକାଳ ହେଲା ଦେହତ୍ୟାଗ କରିଅଛନ୍ତି । ତାଙ୍କର ଦୁଇଜଣ ଶିଷ୍ୟ ଅଛନ୍ତି ।

ହରିହର ମଠ ମଧ୍ୟ ବହୁ ପ୍ରାଚୀନ । ଏଠାରେ ବରାବର ସାଧୁମାନେ ବାସକରି ଆସୁଛନ୍ତି । ଏହା ମନ୍ଦିରର ଊର୍ଦ୍ଧ୍ୱ ଦେଶରେ ଅବସ୍ଥିତ । ଏହାର ପରିବେଶ ମଧ୍ୟ ଅତି ମନୋରମ ।

ଶ୍ରୀ ଚନ୍ଦ୍ରଶେଖରଜୀଉଙ୍କର ଚାରିଗୋଟି ଖମାର ଅଛି—ଦୁର୍ଗାପ୍ରସାଦ, ମହୁଲ ଖଳ, ବାଇଁଶିଆ ଓ ସାନ୍ଧାପଶି । ଏହି ଖମାରମାନଙ୍କର ଅନ୍ତର୍ଗତ ଜମିର ଆୟରୁ ଶ୍ରୀମନ୍ଦିରର ସମସ୍ତ ଭୋଗ ସମ୍ପନ୍ନ ହୋଇଥାଏ । ଜମି ମଧ୍ୟରୁ କେତେକ

ନିଜ ଗୃଷ ଓ ଅବଶିଷ୍ଟ ସଞ୍ଜା ବା ଭାଗରେ ଦିଆଯାଏ । ସରକାର ତାଙ୍କର ଦେବୋତ୍ତର ଅଫିସରଙ୍କ ଦ୍ୱାରା ସଞ୍ଜା ଓ ଭାଗଧାନ ସବୁ ଆଦାୟ କରି ବଜେଟ ଅନୁସାରେ ବାର୍ଷିକ ବ୍ୟୟ ନିର୍ବାହ କରିଥାନ୍ତି । ଜମିଗୁଡ଼ିକ ସବୁ ଲାଖରାଜ ଜମି । ଏହି ଜମି ମହାରାଜା ପ୍ରତାପ ନରସିଂହ ଦେବ ଠାକୁରଙ୍କ ନିଯୋଗ ପାଇଁ ଖଞ୍ଜା କରି ଯାଇଥିଲେ ।

| | |
|---|---|
| ଦୁର୍ଗାପ୍ରସାଦ—ଏକର | ୮୦—୫୦ |
| ମହୁଲ ଖଳ—ଏକର | ୨୪—୫୦ |
| ବାଇଁଶିଆ—ଏକର | ୫୧—୯୦ |
| ସାଦାପଣି—ଏକର | ୪୫—୨୯ |
| ଏକର | ୨୦୨—୧୯ |

ଏତଦ୍‌ଭିନ୍ନ ଠାକୁରଙ୍କ ଆଉ କେତେକ ପରିମାଣ ଜମି, ଜଙ୍ଗଲ ଓ ତଇଲା ପ୍ରଭୃତି ଅଛି । କେତେକ ଗ୍ରାମବାସୀ ଠାକୁରଙ୍କ ଜମି ଉମୃତ୍ତ ସୂତ୍ରରେ ଉପଭୋଗ କରି ବାର୍ଷିକ ଖଜଣା ଦେଇଥାନ୍ତି । ଏହି ଖଜଣା ଏବଂ କପିଳାସ କ୍ଷେତ୍ରର ଅନ୍ତର୍ଗତ ଅରଣ୍ୟାଞ୍ଚଳରୁ ଜଙ୍ଗଲବିଭାଗ ଦେବୋତ୍ତର ବିଭାଗକୁ ଯେଉଁ ଅର୍ଥ ଦେଇଥାନ୍ତି ତାହା ଠାକୁରଙ୍କର ବାର୍ଷିକ ଆୟବ୍ୟୟର ଅନ୍ତର୍ଗତ ହୋଇଥାଏ ।



# ଶ୍ରୀଧର ସ୍ୱାମୀ

ଶ୍ରୀ ଚନ୍ଦ୍ରଶେଖରଙ୍କ ମନ୍ଦିର ବ୍ୟତୀତ କପିଳାସରେ କେତେକ କ୍ଷୁଦ୍ର ବୃହତ୍ ମଠ ଦେଖାଯାଏ । ସେମାନଙ୍କ ନାମ ବ୍ରହ୍ମଗୃହ ମଠ, ବଳରାମ ମଠ, ବାସୁଦେବ ମଠ ଏବଂ ହରିହର ମଠ । ବ୍ରହ୍ମଗୃହ ମଠ ପ୍ରାଚୀନତମ । ହରିହର ମଠ ପ୍ରାୟ ୨୦୦ ବର୍ଷ ତଳେ ସ୍ଥାପିତ ହୋଇଥିଲା । ଏହି ମଠମାନଙ୍କ ମଧ୍ୟରୁ ସମସ୍ତଙ୍କର ସ୍ୱତନ୍ତ୍ର କୌଣସି ଭୂମି ବୃତ୍ତି ନାହିଁ । ଏଗୁଡ଼ିକ ଶ୍ରୀ ଶିଖରେଶ୍ୱରଙ୍କ କୋଠ ଭୋଗରୁ ପ୍ରତ୍ୟହ ନିର୍ଦ୍ଦିଷ୍ଟ ପରିମାଣ ଭୋଗ ପାଇଥାନ୍ତି । ଅବଶ୍ୟ ସବୁ ସମୟରେ ଉପଯୁକ୍ତ ମଠାଧୀଶମାନେ କେତେକ ମଠରେ ରହନ୍ତି ନାହିଁ ବା ଏମାନଙ୍କର ନିର୍ଦ୍ଦିଷ୍ଟ ପରମ୍ପରା ନାହିଁ । ବ୍ରହ୍ମଗୃହ ମଠ ଭିନ୍ନ ଅନ୍ୟମାନଙ୍କର ଇତିହାସ ମଧ୍ୟ ଅନିର୍ଦ୍ଦିଷ୍ଟ । ବ୍ରହ୍ମଗୃହ ମଠର ସଙ୍କେତ ମଠରେ ସଂରକ୍ଷିତ ଗୁରୁକୁଳାମ୍ନାୟରୁ ଜଣାପଡ଼େ ।

ଓଡ଼ିଶାର ଗଜପତି ମହାରାଜା ପ୍ରତାପରୁଦ୍ର ଦେବ କପିଳାସର ତତ୍ତ୍ୱାବଧାରକ ରୂପେ ଶ୍ରୀ ରାମକୃଷ୍ଣାନନ୍ଦ ସ୍ୱାମୀଙ୍କୁ ଏଠାକୁ ଅଣାଇଥିଲେ । ସେ କପିଳାସରେ ଅବସ୍ଥାନ କରି ଶିଖରେଶ୍ୱରଙ୍କର ସେବା ପୂଜା ନିୟନ୍ତ୍ରଣ କରୁଥିଲେ । ଶ୍ରୀଳ ରାମକୃଷ୍ଣାନନ୍ଦ ପୁରୀ ଗୋବର୍ଦ୍ଧନ ମଠର ଶିଷ୍ୟ ଥିଲେ । ଗୋବର୍ଦ୍ଧନ ମଠର ଆମ୍ନାୟରେ ମଧ୍ୟ ରାମକୃଷ୍ଣାନନ୍ଦଙ୍କର ନାମୋଲ୍ଲେଖ ପରିଲକ୍ଷିତ ହୁଏ । ଶ୍ରୀଳ ରାମକୃଷ୍ଣାନନ୍ଦ ଶଙ୍କରାଚାର୍ଯ୍ୟଙ୍କର ପରମ୍ପରା ଅନୁସାରେ ଦଣ୍ଡୀ ସନ୍ନ୍ୟାସୀ ଥିବାରୁ ଏହି ମଠର ନାମ ଦଣ୍ଡୀସ୍ୱାମୀ ମଠ ବୋଲି ମଧ୍ୟ କୁହାଯାଏ । ଏହି ମଠର ଗୁରୁନାମାମ୍ନାୟ ଅନୁସାରେ ଜଣାଯାଏ ଯେ, ଭାରତବିଖ୍ୟାତ ଶ୍ରୀମଦ୍ ଭାଗବତ, ବିଷ୍ଣୁପୁରାଣ ଓ ଶ୍ରୀମଦ୍ ଭଗବଦ୍ ଗୀତାର ପ୍ରଖ୍ୟାତ ଟୀକାକାର ଶ୍ରୀଧର ସ୍ୱାମୀ ଶ୍ରୀ ରାମକୃଷ୍ଣାନନ୍ଦଙ୍କର ଶିଷ୍ୟ ଥିଲେ ଏବଂ ସେ ଏହି ବ୍ରହ୍ମଗୃହ ମଠରେ ବହୁଦିନ ରହି ଶ୍ରୀ ନୃସିଂହଙ୍କ ଉପାସନା ଓ କଠୋର ତପଶ୍ଚର୍ଯ୍ୟା କରି ସିଦ୍ଧି ଲାଭ କରିଥିଲେ । ଏଠାରେ ଉକ୍ତ ଶ୍ରୀଧର ସ୍ୱାମୀଙ୍କ ସମ୍ବନ୍ଧରେ ସବିଶେଷ ଆଲୋଚନା କରିବା ଅପ୍ରାସଙ୍ଗିକ ହେବ ନାହିଁ ।

ଏକସ୍ଥାନରେ କାଶୀସୁଲଭ ଗଙ୍ଗା, ମଣିକର୍ଣ୍ଣିକା ଓ ବିଶ୍ୱେଶ୍ୱର ପୀଠ ଥିବାରୁ କପିଳାସକୁ ମଧ୍ୟ ବାରାଣସୀ କ୍ଷେତ୍ର ଆଖ୍ୟା ଦିଆଯାଇଅଛି, ଯଥା—

ଆସ୍ତେ ବାରାଣସୀ କ୍ଷେତ୍ରଂ ମୁକ୍ତିଦଂ ସିଦ୍ଧି କାମଦଂ
ଯତ୍ର ବିଶ୍ୱେଶ୍ୱରୋଦେବଃ ସାଧକାନାଂ ବରପ୍ରଦଃ ।

"କପିଳ ସଂହିତା"

ଏହି ବାରାଣସୀ କ୍ଷେତ୍ରର ଦକ୍ଷିଣ ସୀମାରେ ବ୍ରହ୍ମଗୃହ ମଠ । ଏଠାରେ 'ଦଣ୍ଡୀ ଗୋସ୍ୱାମୀ' ବାସ କରୁଥିଲେ ।

"ପୀଠେଽସ୍ୟ ଶିଷ୍ୟୋଽଭୂ ଦ୍ଭୋଗ ବର୍ଦ୍ଧନେ
ମହେଶ୍ୱରାନନ୍ଦ ସରସ୍ୱତୀ ବସନ୍
ନୀଳାଦ୍ରିନାଥ ଚରଣ ଯଥା ପୁର
ନବାକ୍ଷତୋଽସ୍ମଽଶ୍ରମକୃତ୍ୟ ତତ୍ପୁର । ୭୫ ।
ଶ୍ରୀରାମକୃଷ୍ଣାନନ୍ଦୋଽଭୂତ୍ ଶିଷ୍ୟସ୍ତସ୍ୟ ମହାଯତିଃ
ତଦବେତ୍ୟ ଦଦୌ ତସ୍ମୈ ସ୍ୱାମିବର୍ଯ୍ୟାୟ ନେତୃତାଂ
ପ୍ରତାପରୁଦ୍ର ନୃପତିଃ କପିଳାସ ଶିବାଳୟେ ।
ତତ୍‌ଶିଷ୍ୟୋଽଭୂତ୍ ଶ୍ରୀଧର ସ୍ୱାମି ପାଦଃ
ଜପ୍ତ୍ୱାନିତ୍ୟଂ ମନ୍ତ୍ରରାଜଂ ( ନାରସିଂହଂ ) ସଭକ୍ତ୍ୟା
ବିଦ୍ୟା ଶ୍ଚତୁର୍ଦ୍ଦଶ୍ୟ ମଭ୍ୟାସ ବଶ୍ୟଂ
ସ୍ୱସ୍ୟ କ୍ଷିପ୍ରଂ ବିପ୍ରମୋକ୍ଷଂ ତତାନ । ୮୧ ।

ଶ୍ରୀମଦ୍ ଭାଗବତଂ ସ ଶୁଦ୍ଧ ବିଶଦଂ ବ୍ୟାଖ୍ୟାୟ ସୁଖ୍ୟାତିମାନ୍
ବିଶ୍ୱସ୍ୟୋପକୃତିଂ ଚକାର ନିତରାଂ ତତ୍ତ୍ୱାର୍ଥ ମାଧାପୟନ୍
ପ୍ରାଧାନ୍ୟଂ ଗିରିଶୋ ନୃସିଂହ କରୁଣା ଯତ୍ନଂ ବିରାଷ୍ଟେଽସ୍ୟତୁ
"ବ୍ୟାସୋ ବେତ୍ତି ନବାଽଥ ବେତ୍ତି ସକଳଂ ଶ୍ରୀ ଶ୍ରୀଧର ସ୍ତ୍ୱେତ୍ୟପି ।"

ସ୍ୱାମୀପାଦ ଶ୍ରୀଧର କେବଳ ଶ୍ରୀମଦ୍ ଭାଗବତର ଟୀକାକାର ନୁହନ୍ତି । ସେ ମଧ୍ୟ ବିଷ୍ଣୁପୁରାଣ ଓ ଭଗବଦ୍ ଗୀତାର ଟୀକା କରିଅଛନ୍ତି ଓ ଅନ୍ୟାନ୍ୟ କେତେକ ଗ୍ରନ୍ଥ ନିଜେ ପ୍ରଣୟନ କରିଅଛନ୍ତି । ତାଙ୍କର ପଦାଙ୍କ ଅନୁସରଣ କରି ଶ୍ରୀମଦ୍ ସନାତନ ଗୋସ୍ୱାମୀ, ଜୀବ ଗୋସ୍ୱାମୀ, ବିଶ୍ୱନାଥ ଚକ୍ରବର୍ତ୍ତୀ ଓ ବଳଦେବ ବିଦ୍ୟାଭୂଷଣ ପ୍ରମୁଖ ମହାତ୍ମାମାନେ ବିସ୍ତୃତ ଟୀକା ପ୍ରଣୟନ କରିଅଛନ୍ତି ।

ଶ୍ରୀମଦ୍ ଭାଗବତର ମୂଳରେ ଅଛି—

ବାଗୀଶା ଯସ୍ୟ ବଦନେ ମାତା ଯସ୍ୟଚ ବକ୍ଷସି
ଯସ୍ୟାସ୍ତେ ହୃଦୟେ ସମ୍ବିତ୍ ଶ୍ରୀ ନୃସିଂହ ମହଂ ଭଜେ ।

ଏହି ଶ୍ଳୋକକୁ ପଦ୍ୟାନୁବାଦରେ ଶ୍ରୀମତ୍ ଜଗନ୍ନାଥ ଦାସ ଅନୁବାଦ କରିଅଛନ୍ତି—

ନମଇଁ ନୃସିଂହ ଚରଣ । ଅନାଦି ପରମ କାରଣ ॥
ଲୀଳା ବିଧୃତ କଳେବର । ଦେବ ମାନବେ ଅଗୋଚର ॥

ଏହାକୁ ଅନେକେ ( ମୂଳ ସଂସ୍କୃତ ପଢ଼ି ନଥିବା ଲୋକେ ) ଭାଗବତର ପ୍ରଥମ ଶ୍ଳୋକ ବୋଲି କହିଥାନ୍ତି । ଭାଗବତର ମୂଳ ଶ୍ଳୋକ—

ଜନ୍ମା ଦସ୍ୟ ଯତୋ⋯ ⋯ ⋯ସତ୍ୟଂ ପରଂ ଧୀମହି ।

ଏହା ପରମ ସତ୍ୟ ସ୍ୱରୂପ ଶ୍ରୀକୃଷ୍ଣଙ୍କର ହିଁ ବନ୍ଦନା ବା ମଙ୍ଗଳାଚରଣ । ଏହା ଭିନ୍ନ—

ମୂକଂ କରୋତି ବାଚାଳଂ ପଙ୍ଗୁ ଲଙ୍ଘୟତେ ଗିରିଂ
ଯତ୍ କୃପା ତମହଂ ବନ୍ଦେ ପରମାନନ୍ଦ ମାଧବଂ ।

ଏହା ମଧ୍ଯ ଶ୍ରୀଧର ସ୍ୱାମୀକୃତ ଶ୍ଳୋକ—ଭାଗବତକାରଙ୍କର ନୁହେଁ । ଏହା ସମଗ୍ର ଭାରତରେ କୋଟିକଣ୍ଠେ ଉଚ୍ଚାରିତ ହୁଏ ଏବଂ ଗୀତା ମାହାତ୍ମ୍ୟ ପ୍ରଭୃତି ଅନେକ ପ୍ରଶସ୍ତିର ଅନ୍ତର୍ଭୁକ୍ତ ହୋଇଯାଇଛି ।

ବାଲେଶ୍ୱର ଜିଲ୍ଲା ଅନ୍ତର୍ଗତ ସୁପ୍ରସିଦ୍ଧ କ୍ଷୀରଚୋରା ଗୋପୀନାଥଙ୍କ ଅବସ୍ଥିତ ସ୍ଥାନ ରେମୁଣା ନିକଟବର୍ତ୍ତୀ ମଞ୍ଜୁରୀ ଗାଁରେ ପ୍ରଖ୍ୟାତ-ଯଶା ଶ୍ରୀଧର ସ୍ୱାମୀ ଜନ୍ମଗ୍ରହଣ କରିଥିଲେ । ୧୩୦୦-୧୪୦୦ ଖ୍ରୀଷ୍ଟାବ୍ଦର ପ୍ରଥମ ପାଦରେ ତାଙ୍କର ଜନ୍ମ ସମୟ ନିରୂପଣ କରାଯାଇଅଛି । ( ଗୋଲକ ଚନ୍ଦ୍ର ମହାପାତ୍ରଙ୍କ 'ବାଲେଶ୍ୱର' ଦ୍ରଷ୍ଟବ୍ୟ । )

ତାଙ୍କ ରଚିତ ଶ୍ରୀମଦ୍ ଭଗବଦ୍ ଗୀତାର ସୁବୋଧିନୀ ଟୀକା ପୃଥିବୀ-ବିଖ୍ୟାତ । ଶ୍ରୀମଦ୍ ଭଗବଦ୍ ଗୀତା ପୃଥିବୀର ବହୁ ଭାଷାରେ ଅନୂଦିତ ହୋଇଅଛି । ଗୀତାର ଶଙ୍କର ଭାଷ୍ୟ, ରାମାନୁଜ ଭାଷ୍ୟ ଇତ୍ୟାଦି ବହୁ ପ୍ରାଚୀନ ଟୀକା ଥିଲେହେଁ

ଶ୍ରୀଧରଙ୍କର ଟୀକା ବିଶେଷ ଆଦୃତ ଓ ଜନପ୍ରିୟ । ତାଙ୍କର ଶ୍ରୀମଦ୍ ଭାଗବତର ଟୀକା ପାଠକରି ଶ୍ରୀ ଚୈତନ୍ୟ ମହାପ୍ରଭୁ ତାଙ୍କୁ ଗୁରୁ ରୂପେ ସ୍ୱୀକାର କରିଥିଲେ । ଏହି ଟୀକାର ନାମ 'ଭାବାର୍ଥ ଦୀପିକା' । ଏହି ଦୀପିକାର ମୂଳରେ ସ୍ୱାମୀପାଦ ଲେଖିଛନ୍ତି—

ଓଁ ନମୋ ଭଗବତେ ପରମହଂସା ସ୍ୱାଦିତ ଚରଣ କମଳ ଚିନ୍ ମକରନ୍ଦାୟ ଭକ୍ତଜନ ମାନସାୟ ଶ୍ରୀକୃଷ୍ଣାୟ—

ବାଗୀଶା ଯସ୍ୟ ବଦନେ ଲକ୍ଷ୍ମୀ ଯସ୍ୟଚ ବକ୍ଷସି
ଯସ୍ୟାସ୍ତେ ହୃଦୟେ ସମ୍ବିତ୍ ନୃସିଂହ ମହଂ ବନ୍ଦେ
ବିଶ୍ୱସର୍ଗ ବିସର୍ଗାଦି ନବ ଲକ୍ଷଣ ଲକ୍ଷିତଂ
ଶ୍ରୀକୃଷ୍ଣାଖ୍ୟଂ ପରମଧାମ ଜଗଦ୍ଧାମ ନମାମି ତଂ ।

ଶ୍ରୀଧର ସ୍ୱାମୀଙ୍କ ସମ୍ବନ୍ଧରେ ଖଣ୍ଡିଏ ସ୍ୱତନ୍ତ୍ର ପୁସ୍ତିକା ଲେଖା ଯିବାର କଥା, ଯାହାକି ଓଡ଼ିଆ ଭାଷାରେ ଅଦ୍ୟାପି କେହି ଚେଷ୍ଟା କରି ନାହାନ୍ତି । ଏଠାରେ କେବଳ ପ୍ରସଙ୍ଗ କ୍ରମେ କେତୋଟି କଥା ଉଲ୍ଲେଖ କରାଯାଉଅଛି ।

ଶ୍ରୀ ଚୈତନ୍ୟ ମହାପ୍ରଭୁ ପୁରୀରେ ଅବସ୍ଥାନ କଲାବେଳେ ଜନୈକ ପଣ୍ଡିତାଭିମାନୀ ବଲ୍ଲଭଭଟ୍ଟାର୍ଯ୍ୟ ନାମକ ବ୍ୟକ୍ତି ତାଙ୍କୁ ଭେଟି କହିଲେ, "ମହାପ୍ରଭୁ ମୁଁ ଶ୍ରୀମଦ୍ ଭାଗବତର ଗୋଟିଏ ଟୀକା ଲେଖି ସେଥିରେ ଶ୍ରୀଧର ସ୍ୱାମୀଙ୍କର ମତ ଅନେକାଂଶରେ ଖଣ୍ଡନ କରିଅଛି । ଆପଣ ତାକୁ ପାଠ କଲେ ମୁଁ କୃତାର୍ଥ ହେବି ।" ମାତ୍ର ଏହି ଅଭିମାନସୂଚକ ଉକ୍ତି ପ୍ରଭୁଙ୍କ ମନରେ ଆନନ୍ଦ ପରିବର୍ତ୍ତେ କ୍ଷୋଭ ସୃଷ୍ଟି କଲା । ସେ ତାଙ୍କର ଟୀକା ଶୁଣିବା ତ ଦୂରର କଥା, ଅପରନ୍ତୁ କହିଲେ—

ଶ୍ରୀଧର ସ୍ୱାମୀ ନିନ୍ଦି ନିଜ ଟୀକା କର
ଶ୍ରୀଧର ସ୍ୱାମୀ ନାହିଁ ମାନ ଏତ ଗର୍ବ ଧର
ଶ୍ରୀଧର ସ୍ୱାମୀ ପ୍ରସାଦେ ଭାଗବତ ଜାନି
ଜଗଦ୍‌ଗୁରୁ ଶ୍ରୀଧର ସ୍ୱାମୀ ଗୁରୁ କରି ମାନି । ଇତ୍ୟାଦି ।

ଚୈ. ଚ. ଅନ୍ତ୍ୟଲୀଳା ୭ମ-୧୨୮ । ୧୨୯

ଶ୍ରୀଧର ସ୍ୱାମୀ ଓଡ଼ିଶାର ଲୋକ, ଓଡ଼ିଶା ତଥା ପୃଥିବୀର ଗୌରବ; ଅଥଚ ଶ୍ରୀଧର ସ୍ୱାମୀଙ୍କୁ ଓଡ଼ିଆମାନେ ଜାଣନ୍ତି ନାହିଁ । ତାହାର କାରଣ, ଶ୍ରୀମଦ୍ ଭାଗବତ ମୂଳ ସଂସ୍କୃତ ଅତି ଅଳ୍ପ ଲୋକହିଁ ପାଠ କରିଥାନ୍ତି । ଶ୍ରୀମଦ୍ ଜଗନ୍ନାଥ ଦାସଙ୍କ ଓଡ଼ିଆ ସରଳ ପଦ୍ୟାନୁବାଦ ଘରେ ଘରେ ପଠିତ ଓ ପୂଜିତ ହୋଇ ଆସୁଅଛି । କେତେକ ସଂସ୍କୃତ ପଣ୍ଡିତଙ୍କ ଭିନ୍ନ ଶ୍ରୀମଦ୍ ଭାଗବତର କଠିନ ଶୈଳୀ ଓ ଶବ୍ଦବିନ୍ୟାସ ଅନ୍ୟ କାହା ପକ୍ଷରେ ସୁବୋଧ ନୁହେଁ । ଏପରିକି ସଂସ୍କୃତ ଟୋଲ ମାନଙ୍କରୁ ଉତ୍ତୀର୍ଣ୍ଣ ହୋଇଥିବା ସାହିତ୍ୟାଚାର୍ଯ୍ୟମାନେ ସମସ୍ତେ ଭାଗବତ ଜାଣନ୍ତି ନାହିଁ । ଏହାର କାରଣ ଭାଗବତ କୌଣସି ସଂସ୍କୃତ, ଅନୁଷ୍ଠାନର ପାଠ୍ୟକ୍ରମର ଅନ୍ତର୍ଗତ ନୁହେଁ । ଏବର ପଣ୍ଡିତମାନେ ତଥା ସ୍କୁଲ କଲେଜର ଛାତ୍ରମାନେ ପାଠ୍ୟକ୍ରମର ଅନ୍ତର୍ଗତ ବିଷୟ ବ୍ୟତିରିକ୍ତ ଅନ୍ୟ କୌଣସି ବିଷୟ ପଢ଼ିବାରେ ପ୍ରୟାସୀ ହେଉ ନଥିବା ହେତୁ ସେମାନଙ୍କର ଜ୍ଞାନର ପରିସର ସୀମିତ । ଅଧୁନା ସ୍ଥାନେ ସ୍ଥାନେ କେତେକ ସୁଧୀ ଶ୍ରୀମଦ୍ ଭାଗବତ ( ସଂସ୍କୃତ ) ପାରାୟଣ କରି ଲୋକମାନଙ୍କୁ ଶୁଣାଉ ଅଛନ୍ତି । ମଧ୍ୟେ ମଧ୍ୟେ ଭାଗବତ ପ୍ରବଚନ ମଧ କରା ଯାଉଅଛି । ମାତ୍ର ସେଥିକରେ ଶେଷ—ଅଧିକ ଅଗ୍ରସର ହେବା କ୍ୱଚିତ ପରିଦୃଷ୍ଟ ହେଉଅଛି । ମୂଳ ଭାଗବତ, ରାମାୟଣ, ବିଷ୍ଣୁ ପୁରାଣ, ମହାଭାରତ ପ୍ରଭୃତି ସଂସ୍କୃତ ଗ୍ରନ୍ଥମାନ ଓଡ଼ିଶାରେ ଅତି ଅଳ୍ପ ଲୋକ ହିଁ ପାଠ କରନ୍ତି ।

ଶ୍ରୀଧର ସ୍ୱାମୀଙ୍କ ସମ୍ବନ୍ଧରେ ଭିନ୍ନ ଭିନ୍ନ ପ୍ରକାଶିତ କତିପୟ ଉକ୍ତି—

(କ) ଶ୍ରୀଧର ନାମେ ବିପ୍ରବର । କଳିଯୁଗରେ ଜନ୍ମ ତାର ॥
ଶ୍ରୀଭାଗବତ ଯେ ପୁରାଣ । ଅଷ୍ଟାଦଶ ସହସ୍ର ଶ୍ଳୋକେନ ॥

୧୦୭—୧୧୦ ପଦ, ୧୩ଶ ଅଧ୍ୟାୟ
୧୨ଶ ସ୍କନ୍ଧ ଭାଗବତ—ଜଗନ୍ନାଥ ଦାସ ।

(ଖ) ଓଡ଼ିଆ ଚୈତନ୍ୟ ଚରିତାମୃତ—
୯୭—୧୦୩ ପଦ—୨ୟ ଖଣ୍ଡ, ଅନ୍ତ୍ୟଲୀଳା, ସପ୍ତମ ପରିଚ୍ଛେଦରେ ଲେଖାଅଛି—

ଆରଦିନ ବସିଲେ ଆସି ପ୍ରଭୁ ନମସ୍କରି
ସଭାତେ କଲେନ କିଛୁ ମନେ ଗର୍ବ କରି

ଭାଗବତେ ସ୍ୱାମୀର ବ୍ୟାଖ୍ୟା କରିଯାଛି ଖଣ୍ଡନ
ଲଇତେ ନ ପାର ତାର ବ୍ୟାଖ୍ୟାର ବଚନ

+ + +

ପ୍ରଭୁ ହାସି କହେ ସ୍ୱାମୀ ନା ମାନେ ଯେଇ ଜନ
ବେଶ୍ୟାର ଭିତରେ ତାରେ କରିୟେ ଗଣନ
ଏତ କହି ମହାପ୍ରଭୁ ମୌନ କରିଲ
ଶୁନିୟା ସବାର ମନେ ସନ୍ତୋଷ ହଇଲ ।
( ୰ ବାବାଜୀ ପଦ୍ମଚରଣ ଦାସ ) ✽

(ଗ) ୨୮-୧୧-୭୭ 'ସମାଜ'ରେ—ଶ୍ରୀ ଶରତ ଚନ୍ଦ୍ର ମହାରଣାଙ୍କ ଲେଖା—

୧୮୯୫ ମସିହାରେ ୰ ବହାଗିଲାଲ ପଣ୍ଡିତଙ୍କ ଦ୍ୱାରା ଓଡ଼ିଆ ଭାଷାରେ ସମ୍ପାଦିତ ଓ ପ୍ରକାଶିତ ଗୀତାରେ ଶ୍ରୀଧର ସ୍ୱାମୀଙ୍କର ଟୀକା ଅନୁସୃତ ହୋଇଛି । ବହୁକାଳ ପର୍ଯ୍ୟନ୍ତ ସେହି ଶ୍ରୀଧର ସ୍ୱାମୀଙ୍କର ଜନ୍ମସ୍ଥାନ ଓ ପରିଚୟ ଯେକ କିଛି ସ୍ଥିର ହୋଇ ପାରି ନଥିଲା ।

---

✽ ବାବାଜୀ ପଦ୍ମ ଚରଣ ଦାସ ବାଲେଶ୍ୱର ନିବାସୀ । ଏହା ତାଙ୍କର ବୈଷ୍ଣବ ଦୀକ୍ଷାର ସନ୍ୟାସ ନାମ । ପୂର୍ବରୁ ତାଙ୍କର ନାମ ଥିଲା ଶ୍ରୀ ପାର୍ବତୀ ଚରଣ ଦାସ ବି. ଏ. । ସେ ଢେଙ୍କାନାଳର ରାଜର୍ଷି ସୁର ପ୍ରତାପଙ୍କର ବାଲ୍ୟଶିକ୍ଷକ ଥିଲେ ଏବଂ ତାଙ୍କ ରାଜତ୍ୱ କାଳରେ ମ୍ୟାଜିଷ୍ଟ୍ରେଟ ପଦରେ ନିଯୁକ୍ତ ହୋଇଥିଲେ । ସେ ପରମ ଭାଗବତ ପ୍ରେମୀ ଓ ନ୍ୟାୟବନ୍ତ ଥିଲେ । ସୁରପ୍ରତାପ ତାଙ୍କୁ ବିଶେଷ ସମ୍ମାନ ଦେଉଥିଲେ । ସେ ଦେବୋତ୍ତର ବିଭାଗର ଦାୟିତ୍ୱରେ ଥାଇ ସମଗ୍ର ଢେଙ୍କାନାଳର ମଠ, ମନ୍ଦିର ଓ ଲାଖରାଜ ଭୂମିବୃତ୍ତି ମାନଙ୍କର ସଂସ୍କାର କରାଇଥିଲେ । ସେ ଶ୍ରୀ ଚୈତନ୍ୟ ଚରିତାମୃତର ଓଡ଼ିଆ ଅନୁବାଦ କରିଥିଲେ । ତା ଛଡ଼ା ସେ ଅନେକ ଗୁଡ଼ିଏ ବୈଷ୍ଣବ ଗ୍ରନ୍ଥ ରଚନା କରିଥିଲେ । ସୁରପ୍ରତାପଙ୍କ ମହାପ୍ରୟାଣ ପରେ ସେ ବୃନ୍ଦାବନକୁ ଯାଇ ସନ୍ୟାସୀ ଭାବରେ ଶେଷ ଜୀବନ ଯାପନ କଲେ । ତାଙ୍କର ଚରିତାମୃତ ସେ ସୁରପ୍ରତାପଙ୍କ ନାମରେ ଉତ୍ସର୍ଗ କରିଯାଇଛନ୍ତି । ଉତ୍ସର୍ଗ ପତ୍ରଟି କରୁଣ ରସାସିକ୍ତ । ଆହୁରି ମଧ୍ୟ ସେ ଶ୍ରୀଧର ସ୍ୱାମୀଙ୍କର 'ବ୍ରଜବିହାର' କାବ୍ୟର ଅନୁବାଦ ଓ ମୁଦ୍ରଣ କରିଥିଲେ । ଅଧୁନା ଏ ଗ୍ରନ୍ଥ ଦୁଷ୍ପ୍ରାପ୍ୟ ।

ଶ୍ରୀ ଚନ୍ଦ୍ରମୋହନ ମହାରଣା ମୁକୁର ସାହିତ୍ୟିକ ମାସିକ ପତ୍ରିକାରେ ପ୍ରବନ୍ଧ ଲେଖି ପ୍ରଥମେ ପ୍ରମାଣ କଲେ ଯେ, ଶ୍ରୀଧର ସ୍ୱାମୀ ବାଲେଶ୍ୱର ଜିଲ୍ଲା ରେମୁଣା ଥାନା ଅନ୍ତର୍ଗତ, ସୋନ ଓ ବଳଙ୍ଗ ନଦୀ ଅନ୍ତର୍ଗତ ମରେଇ ଗାଁରେ ଜନ୍ମଗ୍ରହଣ କରିଥିଲେ । ଓଡ଼ିଶାର ଲବ୍ଧ ପ୍ରତିଷ୍ଠ ପ୍ରତ୍ନତତ୍ତ୍ୱବିତ୍ ଶ୍ରୀ ପରମାନନ୍ଦ ଆଚାର୍ଯ୍ୟ ତାଙ୍କର Studies in Orissan History Archaeology and Archieves ପୁସ୍ତକର ୪୧୨-୪୨୪ ପୃଷ୍ଠାରେ—A short note on Sridhar Swami and Baladev Vidyabhusan ଶୀର୍ଷକ ମୂଲ୍ୟବାନ୍ ଐତିହାସିକ ପ୍ରମାଣ ଦେଇଅଛନ୍ତି ।

କୋଣାର୍କ ପଞ୍ଚସଖା ବିଶେଷାଙ୍କ ସାହିତ୍ୟ ଏକାଡେମୀ ପ୍ରକାଶନରେ ଅଧ୍ୟାପକ ଡକ୍ଟର୍ ନିତ୍ୟାନନ୍ଦ ଶତପଥୀ ଶ୍ରୀଧର ସ୍ୱାମୀଙ୍କ ସମ୍ବନ୍ଧରେ କେତେକ ଉପାଦେୟ ତଥ୍ୟ ପ୍ରକାଶ କରିଅଛନ୍ତି । + + + ଶ୍ରୀଧର ସ୍ୱାମୀ ଓଡ଼ିଶାରେ ସଂସ୍କୃତ ଭାଗବତର ଆଦର ବଢ଼ାଇଥିଲେ । ଏହି ଭାଗବତ ଚର୍ଚ୍ଚାର ପ୍ରସାର ଫଳରେ ଜଗନ୍ନାଥ ଦାସ ସଂସ୍କୃତ ଭାଗବତକୁ ଓଡ଼ିଆରେ ଅନୁବାଦ କରିବାରେ ପ୍ରେରଣା ପାଇଥିଲେ ।

ଡକ୍ଟର୍ ହରେକୃଷ୍ଣ ମହତାବ ମଧ୍ୟ ତାଙ୍କର ଓଡ଼ିଶା ଇତିହାସରେ ଦର୍ଶାଇଛନ୍ତି ଯେ, ଶ୍ରୀଧର ସ୍ୱାମୀଙ୍କର ଜନ୍ମସ୍ଥାନ ରେମୁଣା ଥାନାର ମରେଇ ଗାଁ ବା ମୟୂର ଗ୍ରାମରେ ।

ଅନୁମାନ କରାଯାଏ ଯେ, ୧୩୫୦ ରୁ ୧୪୦୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ଶ୍ରୀଧର ସ୍ୱାମୀ ଭାଗବତ, ବିଷ୍ଣୁ ପୁରାଣ ଓ ଶ୍ରୀମଦ୍ ଭଗବଦ୍ ଗୀତାର ପାଣ୍ଡିତ୍ୟ-ପୂର୍ଣ୍ଣ ବ୍ୟାଖ୍ୟା କରିଥିଲେ । ସେ ଭାବାର୍ଥ ଦୀପିକା ଟୀକା, ବ୍ରଜବିହାର କାବ୍ୟ ଓ ମହିମ୍ନ ସ୍ତବର ଟୀକା ମଧ୍ୟ ପ୍ରଣୟନ କରିଥିଲେ ।

ଡକ୍ଟର୍ ଏସ୍. କେ. ଦେ ଦର୍ଶାଇଛନ୍ତି ଯେ ଶ୍ରୀଧର ସ୍ୱାମୀ ବୋପଦେବଙ୍କର ପୂର୍ବବର୍ତ୍ତୀ ଥିଲେ ।

କିମ୍ବଦନ୍ତୀ ଅଛି ଯେ, ଢେଙ୍କାନାଳର 'ସପ୍ତଶଯ୍ୟା' ଠାରେ ଶ୍ରୀଧର ସ୍ୱାମୀ ନୃସିଂହ ଆଶ୍ରମ ନିର୍ମାଣ କରାଇଥିଲେ ଏବଂ ନିଜେ ନୃସିଂହ ମନ୍ତ୍ରରେ ଦୀକ୍ଷିତ ହୋଇଥିଲେ । ଶ୍ରୀଧର ସ୍ୱାମୀଙ୍କର ବଂଶଧର ଏବେ ମଧ୍ୟ ମରେଇ ଗାଁରେ ଅଛନ୍ତି ।

ସେହି ବଂଶର ଗୋଟିଏ ଅଂଶ ରେମୁଣାର କ୍ଷୀରଚୋରା ଗୋପୀନାଥଙ୍କ ମନ୍ଦିରକୁ ଯାଇଥିବା ସଡ଼କ କଡ଼ରେ ଅବସ୍ଥିତ ରୁଦ୍ରପୁର ବ୍ରାହ୍ମଣ ଶାସନରେ ବାସ କରୁଥିଲେ । ଏହିଠାରେ ତାଙ୍କର ବଂଶଧର ଶ୍ରୀ ଲକ୍ଷ୍ମୀଧର ପଣ୍ଡାଙ୍କ ଘରେ ବହୁ ତାଳପତ୍ର ପୋଥି ଓ ଶାସ୍ତ୍ର ପୁରାଣ ଆମ୍ଭେମାନେ ଦେଖିଲୁଁ ।

(ଘ) ଦୈନିକ 'ସମାଜ' ୧୭-୨-୭୮ ତାରିଖ ଲେଖାରୁ ଉଦ୍ଧୃତ—ଲେଖିକା ଓ ଲେଖକ—ଶ୍ରୀ ପ୍ରଭାବତୀକୁମାରୀ ଦେବୀ, ଶ୍ରୀ ଶ୍ରୀକେଶ ପ୍ରତାପ ସିଂହ ଦେବ, ଗୌରେନ୍ଦ୍ର ପ୍ରତାପ ସିଂହଦେଓ ।

ତା ୨୮-୧୧-୭୭ ସମାଜରେ ଶ୍ରୀ ଶରତ ଚନ୍ଦ୍ର ମହାରଣାଙ୍କର 'ଶ୍ରୀମଦ୍ ଭଗବଦ୍ ଗୀତାର ଟୀକାକାର ଶ୍ରୀଧର ସ୍ୱାମୀ' ଶୀର୍ଷକ ପ୍ରବନ୍ଧଟି ପ୍ରକାଶିତ ହୋଇଅଛି । ତାଙ୍କର ଜନ୍ମସ୍ଥାନ ସମ୍ବନ୍ଧରେ ଶ୍ରୀ ଶରତ ଚନ୍ଦ୍ର ମହାରଣା—ମୁକୁର ସାହିତ୍ୟିକ ମାସିକ ପତ୍ରିକାର ପ୍ରବନ୍ଧ, ଶ୍ରୀ ପରମାନନ୍ଦ ଆଚାର୍ଯ୍ୟଙ୍କର Studies in Orissan History, Archaeology and Archieves ଏବଂ ଡକ୍ଟର ହରେକୃଷ୍ଣ ମହତାବଙ୍କ ଓଡ଼ିଶା ଇତିହାସ ପ୍ରଭୃତିର କେତେକ ମୂଲ୍ୟବାନ୍ ଐତିହାସିକ ପ୍ରମାଣ ଦେଇ ଅଛନ୍ତି । ଶ୍ରୀଧର ସ୍ୱାମୀ ଯେ ଓଡ଼ିଶାର ଲୋକ ଏଥିରେ କୌଣସି ସନ୍ଦେହ ନାହିଁ ।

କିନ୍ତୁ ତାଙ୍କର କର୍ମସ୍ଥଳୀ ସମ୍ପର୍କରେ ଏବଂ ମୁଖ୍ୟତଃ ଶ୍ରୀମଦ୍ ଭାଗବତର ବିଶ୍ୱବିଖ୍ୟାତ ଭାଷ୍ୟର ରଚନା ସମ୍ପର୍କରେ କେତୋଟି ଅତି ଉପାଦେୟ ତଥ୍ୟ ଏଠାରେ ପ୍ରକାଶ କରାଯାଉଅଛି । 'ଶ୍ରୀଧର ସ୍ୱାମୀ ଓଡ଼ିଶାରେ ଶ୍ରୀମଦ୍ ଭାଗବତର ଆଦର ବଢ଼ାଇଥିଲେ ଏବଂ ଏହି ଭାଗବତ ଚର୍ଚ୍ଚାର ପ୍ରଚାର ଫଳରେ ଜଗନ୍ନାଥ ଦାସ ଭାଗବତକୁ ଓଡ଼ିଆରେ ଅନୁବାଦ କରିବାକୁ ପ୍ରେରଣା ପାଇଥିଲେ ।'

ଶ୍ରୀଧର ନାମେ ବିପ୍ରବର । କଳିଯୁଗରେ ଜନ୍ମ ତାର ॥
ଶ୍ରୀମଦ୍ ଭାଗବତ ଯେ ପୁରାଣ । ଅଷ୍ଟାଦଶ ସହସ୍ର ଶ୍ଲୋକେଣ ॥
ତା ଟୀକା ଚଉବିଂଶ ସହସ୍ର । କରଇ ଶ୍ରୀଧର ପ୍ରକାଶ ॥
ବିପ୍ର କୁଳରେ ଜନ୍ମ ହୋଇ । ଜଗନ୍ନାଥ ଯେ ନାମ ବହି ॥
ପ୍ରାକୃତ ବନ୍ଧେ ଭାଗବତ । କହିଲେ ସନ୍ଥ ଜନ ହିତ ॥

ଦ୍ୱାଦଶ ସ୍କନ୍ଧ, ଓଡ଼ିଆ ଭାଗବତ ।

ଶ୍ରୀ ଶରତ୍‌ଚନ୍ଦ୍ର ମହାରଣାଙ୍କ ପ୍ରବନ୍ଧରେ ଲିଖିତ ଅଛି ଯେ, ଶ୍ରୀଧର ସ୍ୱାମୀ ଢେଙ୍କାନାଳର ସପ୍ତଶଯ୍ୟା ଠାରେ ଆଶ୍ରମ ନିର୍ମାଣ କରି ନୃସିଂହ ମନ୍ତ୍ରରେ ଦୀକ୍ଷିତ ହୋଇ ଶ୍ରୀମଦ୍ ଭାଗବତ, ଶ୍ରୀମଦ୍ ଭଗବଦ୍ ଗୀତା ଓ ବିଷ୍ଣୁ ପୁରାଣାଦିର ବ୍ୟାଖ୍ୟାନମାନ ରଚନା କରିଥିଲେ । ସପ୍ତଶଯ୍ୟା କପିଳାସ ଭଳି ଗୋଟିଏ ପବିତ୍ର ସ୍ଥଳ । ଭଗବଦ୍ ଚିନ୍ତା, ଧ୍ୟାନ, ଯୋଗ, ତପସ୍ୟା କରିବାର ଆଦର୍ଶ ସ୍ଥାନ । ସେଠାରେ ଯେ ଶ୍ରୀଧର ସ୍ୱାମୀ କେତେକ ବିଖ୍ୟାତ ଟୀକା ପ୍ରଣୟନ କରି ନ ଥିବେ ଏପରି କୁହାଯାଇ ନ ପାରେ । ମାତ୍ର କପିଳାସରେ ସେ ଯେ ଭାଗବତର ଟୀକା ଲେଖିଛନ୍ତି ଏହା ସ୍ୱତଃସିଦ୍ଧ । ସେଠାରେ ଗୋସ୍ୱାମୀ ମାନଙ୍କର ସମାଧିମାନ ବିଦ୍ୟମାନ । ସ୍ୱାମୀପାଦଙ୍କ ସମାଧି ଏଥିମଧ୍ୟରେ ବୃହତ୍ତମ ।

( ପ୍ରବନ୍ଧର ଉପସଂହାରରେ ଲେଖିକା ଏବଂ ଲେଖକ ଦୁହେଁ କପିଳାସରେ ସ୍ୱାମୀପାଦ ଶ୍ରୀଧରଙ୍କର ସ୍ମୃତିରକ୍ଷା କରିବା ଦିଗରେ କର୍ତ୍ତୃପକ୍ଷ ତଥା ସର୍ବସାଧାରଣଙ୍କ ଦୃଷ୍ଟି ଆକର୍ଷଣ କରିଅଛନ୍ତି । ଏ ପ୍ରବନ୍ଧଟି ଅବଶ୍ୟ ଅନେକଙ୍କର ଦୃଷ୍ଟି ଆକର୍ଷଣ କରିଥିବ । )

(୬) ସ୍ୱାମୀ ଶ୍ରୀ ଜଗଦୀଶ୍ୱରାନନ୍ଦ କର୍ତ୍ତୃକ ଅନୂଦିତ ଶ୍ରୀମଦ୍ ଭଗବଦ୍ ଗୀତାର ନିବେଦନରେ ଲିଖିତ ( ଶ୍ରୀ ରାମକୃଷ୍ଣ ଧର୍ମଚକ୍ର, ବେଲୁଡ଼ )—

"ଗୀତାର ବହୁ ଭାଷ୍ୟ ଓ ଟୀକା ଅଧ୍ୟୟନାନ୍ତେ ନିଃସଂଶୟ ବୁଝିୟାଛି ଶ୍ରୀଧର ସ୍ୱାମୀକୃତ ସୁବୋଧିନୀ ଟୀକାଇ ସର୍ବାପେକ୍ଷା ସଂକ୍ଷିପ୍ତ, ସରଳ ଓ ସାରଗର୍ଭ ଏବଂ ଅଧିକାଂଶ ପାଠକ ପାଠିକାର ପକ୍ଷେ ଅତିଶୟ ଉପଯୋଗୀ । ଆଚାର୍ଯ୍ୟ ଶ୍ରୀଧର ସ୍ୱାମୀ ସ୍ୱୟଂ ସତ୍ୟଇ ବଲିୟାଛେନ, ପାଠମାତ୍ର ପ୍ରସନ୍ନେଇ ଏଇ ଟୀକାର ଅର୍ଥ ବୋଝାଯାଏ । ସୁବୋଧିନୀ ଟୀକା ଏକଟି ଅନନ୍ୟ ବୈଶିଷ୍ଟ୍ୟ ଜ୍ଞାନ ଓ ଭକ୍ତିର ଅଭିନବ ସମନ୍ୱୟ ସାଧନ । ଏଇ ହେତୁ ମହାପ୍ରଭୁ ଚୈତନ୍ୟ ଦେବ ଏହାର ଭୂୟସୀ ପ୍ରଶଂସା କରିଲେନ ଏବଂ ଭକ୍ତ ଓ ଜ୍ଞାନୀ ଉଭୟେ ଉକ୍ତ ଟୀକା ପାଠେ ଅନୁରକ୍ତ ।

× × ×

ଆଚାର୍ଯ୍ୟ ଶ୍ରୀଧର ସ୍ୱାମୀ ଶ୍ରୀମଦ୍ ଭଗବଦ୍ ଗୀତା, ଶ୍ରୀମଦ୍ ଭାଗବତ ଓ ବିଷ୍ଣୁ ପୁରାଣର ଚିରଞ୍ଜୀବୀ ଟୀକାକାର । ତତ୍‌କୃତ ଟୀକାହିଁ ନିଖିଳ ଭାରତରେ ସମାଦୃତ ଓ ସୁପଠିତ ।

× × ×

ଏହା ଭକ୍ତିମୂଳକ ଓ ସହଜବୋଧ ବଲିୟା ଭାରତେ ସମଧିକ ସମାଦର ପାଇତେଛେ ।"

× × ×

(ଚ) ଶ୍ରୀଧର ସ୍ୱାମୀଙ୍କ ସମ୍ବନ୍ଧରେ ଶ୍ରୀଯୁକ୍ତ ପରମାନନ୍ଦ ଆଚାର୍ଯ୍ୟଙ୍କ ଅଭିମତ—

Studies on Orissan History, Archaeology and Archives published by Cuttack Students Store, 1956.

In Bengali Visvakosa there is a paragraph about Sridhar Swamin in which his Guru's name is given as Paramand, and about his Bhasya of Bhagabat and few other works. No other information has been received.

"ବଙ୍ଗଳା ବିଶ୍ୱକୋଷରେ ଶ୍ରୀଧର ସ୍ୱାମୀଙ୍କ ସମ୍ବନ୍ଧରେ ଗୋଟିଏ ଅନୁଚ୍ଛେଦ ଅଛି । ସେଥିରେ ତାଙ୍କର ଗୁରୁଙ୍କ ନାମ 'ପରମାନନ୍ଦ' * ବୋଲି

---

* ଟିପ୍ପଣୀ—ଶ୍ରୀମଦ୍ ଭାଗବତ ପୁରାଣର ଦଶମ ସ୍କନ୍ଧର ନବୂନବତିତମ ଅଧ୍ୟାୟର ଟୀକାର ଉପସଂହାରରେ ଶ୍ରୀଧର ସ୍ୱାମୀ ଲେଖିଛନ୍ତି—

ସେୟଂ ଶ୍ରୀ ପରମାନନ୍ଦ-ସେବ-ଶ୍ରୀଧର ନିର୍ମିତା
ଶ୍ରୀ ଭାଗବତ ଭାବାର୍ଥ ଦୀପିକା ଦଶମାଶ୍ରୟା ।

ଆତ୍ମ ପ୍ରକାଶିକା ଟୀକାର ପ୍ରାରମ୍ଭରେ ସେ ଲେଖିଅଛନ୍ତି—

ଶ୍ରୀ ବିନ୍ଦୁ ମାଧବଂ ବନ୍ଦେ ପରମାନନ୍ଦ ବିଗ୍ରହଂ
ବାଚଂ ବିଶ୍ୱେଶ୍ୱରଂ ଗଙ୍ଗା ପରାଶର ମୁଖାନ୍ ମୁନୀନ୍ ।

ଭାବାର୍ଥ ଦୀପିକାର ଶେଷ ଶ୍ଳୋକରେ ଲେଖା ଅଛି—

ଗୀୟତାଂ ପରମାନନ୍ଦ ନୃହରି ସଦ୍‌ଗୁରୁ ସ୍ୱୟଂ
ଶ୍ରୀ ପରମାନନ୍ଦ ସମ୍ପ୍ରୀତ୍ୟୈ ଗୁହ୍ୟଂ ଭାଗବତଂ ମୟା
ବିବୃତଂ ତନ୍ମତେନେଦଂ ନତୁ ମନ୍ ମତ ବୈଭବଂ ।

ଶ୍ରୀ ସଦ୍‌ଗୁରୁଙ୍କୁ ପରମାନନ୍ଦ-ସ୍ୱରୂପ—ଏ ଭାବରେ ସ୍ୱାମୀପାଦ ଲେଖିଥିବା ସମ୍ଭବ । ଅଥବା—ଯେ ନୃସିଂହ ସେ ପରମାନନ୍ଦ-ସ୍ୱରୂପ । ତାଙ୍କର ପରମ ଇଷ୍ଟଦେବଙ୍କୁ ସେ ପରମାନନ୍ଦ ବୋଲି କହିବା ମଧ୍ୟ ସମ୍ଭବ । 'ମୋର ମତ ବୈଭବ ନାହିଁ, ମୁଁ ପରମାନନ୍ଦଙ୍କ ପ୍ରୀତି ହେତୁ ତାଙ୍କର ମତ ଅନୁସାରେ ଶ୍ରୀମଦ୍ ଭାଗବତ ବିବୃତ କରଅଛି' ।

ଉଲ୍ଲେଖ ଅଛି ଏବଂ ତାଙ୍କର ଭାଗବତର ଭାଷ୍ୟ ଓ ଆଉ କେତେକ କୃତିର ସଙ୍କେତ ଅଛି । ଅନ୍ୟ କୌଣସି ସମ୍ବାଦ ମିଳି ନାହିଁ ।”

ପୁନଶ୍ଚ ପରମାନନ୍ଦ ଆଚାର୍ଯ୍ୟ ଲେଖିଛନ୍ତି—

“ଇଉରୋପୀୟ ପଣ୍ଡିତମାନଙ୍କ ମଧ୍ୟରେ Dr. J. N. Farquhar, ‘An outline of the religious literature of India’ ନାମକ ତାଙ୍କର ପୁସ୍ତକରେ (Oxford University Press, 1920) ଶ୍ରୀଧର ସ୍ୱାମୀଙ୍କ ସଂବନ୍ଧରେ ଲେଖିଛନ୍ତି :—

ସମ୍ଭବତଃ ୧୪୦୦ ଖ୍ରୀ : ଅ : ରେ, ପୁରୀର ଶଙ୍କରାଚାର୍ଯ୍ୟ ସମ୍ପ୍ରଦାୟ ଗୋବର୍ଦ୍ଧନ ମଠର ମହନ୍ତ ଶ୍ରୀଧର ସ୍ୱାମୀ ଶ୍ରୀମଦ୍ ଭାଗବତ ପୁରାଣର ଗୋଟିଏ ‘ଭାବାର୍ଥ ଦୀପିକା’ ନାମ୍ନୀ ଟୀକା ଲେଖିଥିଲେ—ଏହି ଲେଖାଟିହିଁ ଉକ୍ତ ଗ୍ରନ୍ଥର ଯଥାସମ୍ଭବ ପ୍ରଧାନ ଭାଷ୍ୟ । ସେ ଜଣେ ଉଚ୍ଚ କୋଟୀର ପଣ୍ଡିତ ଥିଲେ ଏବଂ ନିଶ୍ଚୟ ଗୋଟିଏ ବିଶ୍ୱାସଯୋଗ୍ୟ ପରମ୍ପରା ସହିତ ପରିଚିତ ହୋଇଥିବେ । ସେ ତାଙ୍କର ଭାଷ୍ୟର ଆରମ୍ଭରେ ସ୍ପଷ୍ଟ ଉଲ୍ଲେଖ କରିଛନ୍ତି ଯେ, ଏହି ମହାପୁରାଣ ବୋପଦେବଙ୍କ ଦ୍ୱାରା ଲିଖିତ ହୋଇ ନ ଥିଲା ।

Dr. Farquharଙ୍କ ପରେ Dr. S K. De ଶ୍ରୀଧର ସ୍ୱାମୀଙ୍କର କୃତି ସମ୍ବନ୍ଧରେ ଲେଖି ଅଛନ୍ତି । ତାଙ୍କ ପ୍ରବନ୍ଧ—Pre-Chaitanya Vaisnabism in Bengal was published in Festscrift Moriz Winternitz PP.195 first 1933.

“ଏଥିରୁ ଜଣାପଡ଼େ ଯେ, ମାଧବେନ୍ଦ୍ର ପୁରୀ ଏବଂ ତାଙ୍କର ଶିଷ୍ୟ ଈଶ୍ୱର ପୁରୀ * ଶଙ୍କରପନ୍ଥୀ ସନ୍ୟାସୀ ଥିଲେ—ଶ୍ରୀଧର ସ୍ୱାମୀଙ୍କର ସମାନ ପନ୍ଥୀ ।” ଏହି ଶ୍ରୀଧର ସ୍ୱାମୀ ତାଙ୍କର ଭାଷ୍ୟରେ ଶଙ୍କରଙ୍କ ଅଦ୍ୱୈତ ମତ ସହିତ ଶ୍ରୀମଦ୍ ଭାଗବତର ପ୍ରେମ ଭକ୍ତି ମୂଳକ ମତର ସମନ୍ୱୟ କରିଥିଲେ । ଭକ୍ତି ଓ ଜ୍ଞାନର ସମନ୍ୱୟ କରିବା ଲକ୍ଷ୍ୟରେ ତାଙ୍କର ଉଲ୍ଲିଖିତ ପ୍ରଚେଷ୍ଟାର ମୂଲ୍ୟାୟନ ଯାହା ହେଉ

---

* ଈଶ୍ୱରପୁରୀ ଶ୍ରୀମନ୍ ମହାପ୍ରଭୁ ଚୈତନ୍ୟଙ୍କୁ ସନ୍ନ୍ୟାସ ପ୍ରଦାନ କରିଥିଲେ । ମାଧବେନ୍ଦ୍ରଙ୍କ ଦ୍ୱାରା ରେମୁଣାରେ ଗୋପୀନାଥ, ‘କ୍ଷୀରଚୋରା ଗୋପୀନାଥ’ ନାମରେ ପ୍ରସିଦ୍ଧି ଲାଭ କରିଥିଲେ ।

ପଞ୍ଚକେ କମ୍ବିବନ୍ଦୀରୁ ଜଣାଯାଏ ଯେ, ଶ୍ରୀଧରଙ୍କ ଭାଷ୍ୟ ବନାରସରେ ଥିବା ତାଙ୍କର ସମ୍ପ୍ରଦାୟରେ ବିଶେଷ ଆଲୋଡ଼ନ ସୃଷ୍ଟି କରିଥିଲା Dr. De. ବନାରସ ବିଷୟରେ ଯାହା ଲେଖିଛନ୍ତି ( ପୃଷ୍ଠା ୧୭-୧୮ ) ତାହା ନିସ ଚନ୍ଦ୍ରଦତ୍ତଙ୍କ ସଂସ୍କୃତ 'ଭକ୍ତମାଳା' ଗ୍ରନ୍ଥରୁ ସଂଗ୍ରହ କରିଛନ୍ତି ବୋଲି ଅନୁମିତ ହୁଏ । ଏହି ଗ୍ରନ୍ଥ ବମ୍ବେଇ ଭେଙ୍କଟେଶ୍ବର ପ୍ରେସରେ ୧୯୨୬ ରେ ପ୍ରକାଶିତ ହୋଇଥିଲା । ସେଥିରେ ଶ୍ରୀଧର ସ୍ୱାମୀଙ୍କର ଅତିମାନୁଷ କର୍ମମାନ ବର୍ଣ୍ଣିତ ହୋଇଅଛି ।

× × ×

ଶ୍ରୀଧର ସ୍ୱାମୀଙ୍କର ଭକ୍ତିମୂଳକ ଭାଷ୍ୟ ତତ୍କାଳୀନ କେତେକ ଭକ୍ତ ସନ୍ନ୍ୟାସୀଙ୍କ ଦ୍ୱାରା ଆଦୃତ ହୋଇଥିଲା । ସେମାନେ ବଙ୍ଗଦେଶରେ ଶ୍ରୀମଦ୍ଭାଗବତକୁ ମୂଳ ରୂପେ ଧରି ବୈଷ୍ଣବ ଧର୍ମ ପ୍ରଚାର କରିଥିଲେ । ନିଜେ ଶ୍ରୀଚୈତନ୍ୟ ସେହି ସମ୍ପ୍ରଦାୟର ସନ୍ନ୍ୟାସୀ ହୋଇ ମଧ୍ୟ ଏହି ଆନ୍ଦୋଳନକୁ ଗୋଟିଏ ସମ୍ପୂର୍ଣ୍ଣ ନୂତନ ଧାରାରେ ସଜାଇ ଦେଇ ନିଜେ ତାକୁ ନିଜ ଆଚରଣରେ ଦେଖାଇ ଥିଲେ । *

ଶ୍ରୀଧରଙ୍କ ଜନ୍ମସମୟ ସମ୍ବନ୍ଧରେ ଶ୍ରୀ ଏସ୍. କେ. ଦେ ତାଙ୍କର ପାଦ ଟୀପ୍ପଣୀରେ ମନ୍ତବ୍ୟ ଦେଇଛନ୍ତି—୧୭ ପୃଷ୍ଠା । ଶ୍ରୀଧର ଭୋପଦେବଙ୍କ ନାମ ଉଲ୍ଲେଖ କରିଥିବାରୁ ୧୩୦୦ ଖ୍ରୀ: ଅ: ପୂର୍ବବର୍ତ୍ତୀ ହୋଇ ନ ଥିବେ ।

୧୬୧୫ ଖ୍ରୀଷ୍ଟାବ୍ଦରେ କୃଷ୍ଣଦାସ କବିରାଜ ସ୍ୱରଚିତ ଚୈତନ୍ୟ ଚରିତାମୃତ ନାମକ ସୁପରିଚିତ ବୈଷ୍ଣବ ଗ୍ରନ୍ଥରେ ଶ୍ରୀଧର ସ୍ୱାମୀଙ୍କ କୃତ ଶ୍ରୀମଦ୍ଭାଗବତର ଭାଷ୍ୟ ଶ୍ରୀ ଚୈତନ୍ୟଙ୍କ ଉପରେ କପରି ପ୍ରଭାବ ପକାଇଥିଲା ସେ ବିଷୟରେ ଆଲୋକପାତ କରିଛନ୍ତି । ତାଙ୍କର ଲେଖା ନିମ୍ନରେ ଦିଆଗଲା ।

ଶ୍ରୀଧର ସ୍ୱାମୀ ପ୍ରସାଦେତେ ଭାଗବତ ଜାନି
ଜଗତ୍‌ଗୁରୁ ଶ୍ରୀଧର ସ୍ୱାମୀ ଗୁରୁକରି ମାନି ।

ଅନ୍ତ୍ୟଲୀଳା—୭ମ ପରିଚ୍ଛେଦ ।

---

* ଟିପ୍ପଣୀ—'ଅଧୀତି ବୋଧାଚରଣ ପ୍ରଚାରଣୈ'—ଅଧ୍ୟୟନ, ବୋଧ (ଜ୍ଞାନ), ତାପରେ ଆଚରଣ ଓ ତାପରେ ପ୍ରଚାର—ଏହାହିଁ ମତ । ଏପରି ଭାବରେ ନ କଲେ ପ୍ରଚାରର କୌଣସି ମୂଲ୍ୟ ସ୍ଥାୟୀ ହୋଇ ରହେ ନାହିଁ । 'ଆପନ ଆଚରି ଧର୍ମ ଅପରେ ଶିଖାଏ'—ଏହାହିଁ ମହାପ୍ରଭୁଙ୍କ ଉକ୍ତି ।

୧୬୧୫ ରେ ଲିଖିତ ଚୈତନ୍ୟ ଚରିତାମୃତରେ ଶ୍ରୀକୃଷ୍ଣ ଚୈତନ୍ୟଙ୍କର ଉଲ୍ଲିଖିତ ମତ ପ୍ରକାଶିତ ହୋଇଥିଲେ ମଧ୍ୟ ଶ୍ରୀଧର ସ୍ୱାମୀଙ୍କର ଜୀବନ ଇତିହାସ ଏପରି ବିସ୍ମୃତ ହୋଇ ଯାଇଥିଲା ଯେ, Farquhar ତାଙ୍କୁ କେବଳ ପୁରୀ ଗୋବର୍ଦ୍ଧନ ମଠର ମହନ୍ତ ବୋଲି ଉଲ୍ଲେଖ କରିଥିଲେ । କିନ୍ତୁ ଡକ୍ଟର ଏସ୍. କେ. ଦେ Farquharଙ୍କ ମତ ସମର୍ଥନ କରିବା ପାଇଁ ଶ୍ରୀଧର ସ୍ୱାମୀଙ୍କର କୌଣସି ପରମ୍ପରା ପାଇ ନ ଥିଲେ । Farquhar ଙ୍କ ମତରେ ଶ୍ରୀଧର ସ୍ୱାମୀଙ୍କର ଜୀବିତ କାଳ ୧୪୦୦ ଖ୍ରୀ: ଅ: ; ଡକ୍ଟର ଦେଙ୍କ ମତରେ ଏହା ୧୩୦୦ ଖ୍ରୀ: ଅ: ର ପରବର୍ତ୍ତୀ । ଏହା ଉଲ୍ଲେଖ କରାଯାଇପାରେ ଯେ, ୧୫୦୯—୧୦ ମଧ୍ୟରେ ଶ୍ରୀ ଚୈତନ୍ୟ ଓଡ଼ିଶାକୁ ଆସିବା ସମୟରେ ଓଡ଼ିଶାର ଶ୍ରୀ ଜୀବଦେବ ଆଚାର୍ଯ୍ୟ ନାମା ଜନୈକ ବ୍ୟକ୍ତି 'ଭକ୍ତି ଭାଗବତ ମହାକାବ୍ୟ' ଓ 'ଭକ୍ତି ବୈଭବ ନାଟକ' ନାମକ ଦୁଇଟି ସଂସ୍କୃତ ଗ୍ରନ୍ଥ ଲେଖିଥିଲେ । * ସେଥିରୁ ଜଣାଯାଏ ଯେ, ଶ୍ରୀଧର ସ୍ୱାମୀଙ୍କ ମୃତ୍ୟୁ ପରେ ମଧ୍ୟ ଓଡ଼ିଶାରେ ତାଙ୍କର ବିଶେଷ ପ୍ରଭାବ ରହିଥିଲା ।

ବର୍ତ୍ତମାନ ପ୍ରଶ୍ନ ହୁଏ, ଶ୍ରୀଧର ସ୍ୱାମୀଙ୍କର ଜନ୍ମସ୍ଥାନ କେଉଁଠି ? ଉତ୍ତର ଓଡ଼ିଶାର ଅଦ୍ୟାପି ପ୍ରଚଳିତ ମତ ତାଙ୍କର ଜନ୍ମସ୍ଥାନର ସଙ୍କେତ ଦିଏ । ପ୍ରାୟ

* ଟୀପ୍ପଣୀ—ଶ୍ରୀ ଚୈତନ୍ୟଙ୍କ ଓଡ଼ିଶା ଆଗମନ ପୂର୍ବରୁ ଓଡ଼ିଶାରେ ବୈଷ୍ଣବ ଧର୍ମର ବିଶେଷ ପ୍ରଭାବ ପଡ଼ିଥିଲା । ଶ୍ରୀ ଚୈତନ୍ୟ ଜଗନ୍ନାଥ ଦାସଙ୍କର ଭାଗବତର ସରଳ ପଦ୍ୟାନୁବାଦ-ପାଠ ଶ୍ରୀମନ୍ଦିର ବେଢ଼ାରେ ଶୁଣିଥିଲେ । ସେ ବିସ୍ମିତ ହୋଇ ଦେଖିଲେ ଦାସଙ୍କ ଚତୁର୍ଦ୍ଦିଗରେ ଶତଶତ ନରନାରୀ ସମବେତ ହୋଇ ଶ୍ରୀମଦ୍ ଭାଗବତ ଶ୍ରବଣରେ ଆପ୍ୟାୟିତ ହେଉଛନ୍ତି । ଶ୍ରୀମଦ୍ ଭାଗବତର କଠିନ ସଂସ୍କୃତ ଶ୍ଳୋକମାନଙ୍କୁ ଏପରି ସରଳ ଓ ଲୋକପ୍ରିୟ କରାଇବା ବ୍ୟକ୍ତି ଯେ ଜଣେ ମହାପୁରୁଷ, ସେ ତାହା ଅନୁଭବ କରି ତାଙ୍କୁ 'ଅତିବଡ଼' ବୋଲି କହି ଆଲିଙ୍ଗନ କରିଥିଲେ । ସେହିଦିନୁ ଜଗନ୍ନାଥ ଦାସଙ୍କ ସମ୍ପ୍ରଦାୟର ନାମ 'ଅତିବଡ଼ ସମ୍ପ୍ରଦାୟ' ।

ଏହାଭିନ୍ନ ଓଡ଼ିଆ ରାମାନନ୍ଦ ରାୟ ମଧ୍ୟ ବୈଷ୍ଣବ ଧର୍ମତତ୍ତ୍ୱ ବିଷୟରେ ଶ୍ରୀ ଚୈତନ୍ୟଙ୍କର ପ୍ରଶ୍ନାବଳୀର ଯୁକ୍ତିଯୁକ୍ତ ଉତ୍ତର ଦେଇ ତାଙ୍କ ମନରେ ବିଶେଷ ଆନନ୍ଦ ଦେଇଥିଲେ । ଏହା ଚୈତନ୍ୟ ଚରିତାମୃତ ପାଠକମାନଙ୍କୁ ସୁବିଦିତ । ଚୈତନ୍ୟଙ୍କ ନିର୍ଦ୍ଦେଶରେ ରାୟ ରାମାନନ୍ଦ ତାଙ୍କର ଗୃହକର୍ମ ଛାଡ଼ି ପୁରୀରେ ଆସି ଅବସ୍ଥାନ କଲେ । ଶ୍ରୀ ଚୈତନ୍ୟ ରାୟ ରାମାନନ୍ଦଙ୍କର ନାଟକକୁ ବିଶେଷ ଆଦର ସହ ନିତ୍ୟ ପାଠ କରୁଥିଲେ ।

୬୦ ବର୍ଷ ତଳେ ସ୍ୱର୍ଗୀୟ ଚନ୍ଦ୍ରମୋହନ ମହାରଣା ( ରେମୁଣା ନିବାସୀ ଓ ସରକାରୀ ହାଇସ୍କୁଲର ପ୍ରଧାନ ଶିକ୍ଷକ ) ମୁକୁରରେ ଗୋଟିଏ ପ୍ରବନ୍ଧରେ ଶ୍ରୀଧର ସ୍ୱାମୀଙ୍କ ପରମ୍ପରା ସମ୍ବନ୍ଧରେ ଲେଖିଥିଲେ । ସେ ଲେଖିଥିଲେ, ଶ୍ରୀଧରଙ୍କ ଜନ୍ମ ଓ ବାସସ୍ଥାନ ରେମୁଣାର କ୍ଷୀରଚୋରା ଗୋପୀନାଥଙ୍କ ନିକଟରୁ ପ୍ରାୟ ୩ ମାଇଲ ଦୂର ମରେଇ ଗାଁ ଅଟେ ।

× × ×

ଏପରି ମନେ ହୁଏ ଯେ, ଶ୍ରୀଧର ସ୍ୱାମୀ ରେମୁଣାର ଶ୍ରୀ ଗୋପୀନାଥଙ୍କ ଦ୍ୱାରା ପ୍ରଭାବିତ ହୋଇଥିଲେ । ସେ ମଧ୍ୟ ମରେଇ ଗାଁ ଓ ତାର ନିକଟବର୍ତ୍ତୀ ଅଥବା ବୈଦିକ ବ୍ରାହ୍ମଣମାନଙ୍କ ଦ୍ୱାରା ପ୍ରଭାବିତ ହୋଇଥିଲେ । ମରେଇ ଗାଁରେ ଶ୍ରୀଧର ସ୍ୱାମୀଙ୍କର ବଂଶଧରମାନେ ଅଦ୍ୟାପି ବାସ କରୁଅଛନ୍ତି ।

× × ×

ରେମୁଣା ଓ ଶ୍ରୀ ଗୋପୀନାଥ ମହାପ୍ରଭୁଙ୍କ ଐତିହ୍ୟ ଲୋକେ ପ୍ରାୟ ଭୁଲିଯାଇଛନ୍ତି । ଏହା ସହିତ ଶ୍ରୀଧର ସ୍ୱାମୀଙ୍କ ଜୀବନ ଚରିତ ମଧ୍ୟ ବିସ୍ମୃତ ହୋଇ ଯାଇଛି ।"

× × ×

ଶ୍ରୀଧର ସ୍ୱାମୀଙ୍କ ସମ୍ବନ୍ଧେ ନାନାବିଧ ଐତିହାସିକ ତଥ୍ୟ ତଥା କିଂବଦନ୍ତୀ ମାନ ପ୍ରଚଳିତ ଅଛି । କେହି କେହି କହନ୍ତି, ସେ ଗୁଜରାଟ ଦେଶୀୟ ଅଥବା ମହାରାଷ୍ଟ୍ରୀୟ ବ୍ରାହ୍ମଣ ଥିଲେ । କେହି କେହି ତାଙ୍କୁ ଭଟିକାବ୍ୟ ରଚୟିତାଙ୍କର ପିତା ବୋଲି କହିଥାନ୍ତି । ( ଭକ୍ତମାଳ-୧୨ଶ ) ଅନ୍ୟ ମତରେ ସେ ଅଦ୍ୱୈତ ମତାବଲମ୍ବୀ ସନ୍ନ୍ୟାସୀ । ଏହି ମତାବଲମ୍ବୀ ହୋଇଥିବାରୁ ସେ ପୁରୀର ଶଙ୍କରାଚାର୍ଯ୍ୟ ପ୍ରତିଷ୍ଠିତ ଗୋବର୍ଦ୍ଧନ ମଠର ଅନ୍ୟତମ ସନ୍ନ୍ୟାସୀ ରୂପେ ନିଯୁକ୍ତ ହୋଇଥିଲେ । ସେ ବ୍ରହ୍ମଚାରୀ ଥିଲେ । ବସ୍ତୁତଃ ବ୍ରହ୍ମଚାରୀ ସନ୍ନ୍ୟାସୀମାନେହିଁ ଶଙ୍କରାଚାର୍ଯ୍ୟଙ୍କ ପ୍ରତିଷ୍ଠିତ ମଠମାନଙ୍କର ପାରମ୍ପରିକ ମହନ୍ତ । ବିବାହିତମାନେ ନୁହନ୍ତି । ଏଣୁ ତାଙ୍କ ପୁତ୍ର ଥିବା କଥା କପୋଳକଳ୍ପିତ ।

---

ଚଣ୍ଡୀଦାସ ବିଦ୍ୟାପତି ରାୟେର ନାଟକ ଗୀତ
କର୍ଣ୍ଣାମୃତ ଶ୍ରୀ ଗୀତଗୋବିନ୍ଦ—
ସ୍ୱରୂପ ଦାମୋଦର ସନେ ମହାପ୍ରଭୁ ରାତ୍ରିଦିନେ
ପଢ଼େ ଶୁନେ ପରମ ଆନନ୍ଦ ।

## ତାଙ୍କର ରଚିତ ଗ୍ରନ୍ଥାବଳୀ—

୧ । ଶ୍ରୀମଦ୍ ଭଗବଦ୍ ଗୀତାର ଟୀକା— ସୁବୋଧିନୀ
୨ । ଶ୍ରୀ ବିଷ୍ଣୁପୁରାଣର ଟୀକା— ଆତ୍ମପ୍ରକାଶ
୩ । ଶ୍ରୀମଦ୍ ଭାଗବତର ଟୀକା— ଭାବାର୍ଥ ଦୀପିକା
୪ । ସନତ୍ ସୁଜାତୀୟର ଟୀକା— ବାଲବୋଧିନୀ
୫ । ଗୀତା ସାର ଟୀକା— ବ୍ରହ୍ମ ସମ୍ବୋଧିନୀ

( Bhandarkar Research Institute
Poona Ms. No. 425 )

୬ । ବ୍ରଜବିହାର କାବ୍ୟ ( ଜୀବାନନ୍ଦ ବିଦ୍ୟାସାଗର ପ୍ରକାଶିତ—
କାବ୍ୟ ସଂଗ୍ରହ )
୭ । ଦେବସ୍ତୁତି ଟୀକା—ଭାଗବତ ପୁରାଣ ବିଷୟକ
୮ । ପଦାର୍ଥ ପ୍ରକାଶିକା—ପୁରାଣ ଟୀକା

Oppert II 4714—CC II—150

୯ । 'ପଦ୍ୟାବଳୀ'ରେ ଉଦ୍ଧୃତ କେତୋଟି ଶ୍ଳୋକ—୧୫,୨୮,୪୩

## ଶ୍ରୀ ପଦ୍ୟାବଳୀ

ଶ୍ରୀ ରୂପଗୋସ୍ୱାମି ପ୍ରଭୁପାଦେନ ପ୍ରଣୀତା ତଥା ସମାଦୃତା
'ସ୍ୱାଗତା'—(ଶ୍ଳୋକ-୧୫)

ଜ୍ଞାନମସ୍ତି ତୁଳିତଂ ଚ ତୁଳାୟାଂ
ପ୍ରେମ ନୈବ ତୁଳିତଂ ତୁ ତୁଳାୟାଂ
ସିଦ୍ଧିରେବ ତୁଳିତାତ୍ର ତୁଳାୟାଂ
କୃଷ୍ଣ ନାମ ତୁଳିତଂ ନ ତୁଳାୟାଂ

ଶ୍ରୀଧର ସ୍ୱାମୀ ପାଦାନାଂ

ଶ୍ରୀଧର ସ୍ୱାମୀ କହିଛନ୍ତି ଯେ, ଅଚ୍ୟୁତ ଭାବବର୍ଜିତ ଜ୍ଞାନ ଏବଂ ଅଣିମାଦି ଅଷ୍ଟସିଦ୍ଧି ଏ ଦୁଇଟି ତରାଜୁରେ ତୋଳା ଯାଇ ପାରିବ । କିନ୍ତୁ ଭଗବଦ୍ ବିଷୟକ ପ୍ରେମ ଏବଂ ଶ୍ରୀକୃଷ୍ଣଙ୍କର ନାମ ଏ ଦୁଇଟି ତୁଳାରେ ତୁଳାଯାଇ ପାରିବ ନାହିଁ । ଅର୍ଥାତ୍ ଏ ଦୁଇର ସମତୁଲ୍ୟ କୌଣସି ପଦାର୍ଥ ସଂସାରରେ ନାହିଁ ।

## ଟିପ୍ପଣୀ

ନୈଷ୍କର୍ମ୍ମ୍ୟମପ୍ୟଚ୍ୟୁତ ଭାବବର୍ଜ୍ଜିତଂ
ନ ଶୋଭତେ ଜ୍ଞାନ ମଲଂ ନିରଞ୍ଜନଂ ।
—ଭାଗବତ ୧ । ୫ । ୧୨

ଅଚ୍ୟୁତ ଭାବବର୍ଜିତ ଜ୍ଞାନ ( ନୈଷ୍କର୍ମ୍ମ୍ୟ ) ଶୋଭା ପାଏ ନାହିଁ ।

ଶ୍ରେୟଃସୃତିଂ ଭକ୍ତି ମୁଦସ୍ୟ ତେ ବିଭୋ
କ୍ଲିଶ୍ୟନ୍ତି ଯେ କେବଳ ବୋଧଲବ୍ଧୟେ
ତେଷାମସୌ କ୍ଲେଶଳାବଶିଷ୍ୟତେ
ନାନ୍ୟଦ୍ ଯଥା ସ୍ଥୂଳ ତୁଷାବ ଘାତିନାଂ ।
—ଭାଗବତ ୧୦ । ୧୪ । ୪

ଅର୍ଥ—ବେଦରେ ନିରୂପଣ କରାଯାଇଥିବା ଶ୍ରେୟବସ୍ତୁ ଭକ୍ତିକୁ ଛାଡ଼ି ଯେଉଁମାନେ କେବଳ ବୋଧ (ଜ୍ଞାନ) ଲାଭପାଇଁ ଯତ୍ନବାନ୍ ହୁଅନ୍ତି ସେମାନଙ୍କର କ୍ଲେଶହିଁ ସାର ହୋଇଥାଏ । ଯେପରି ତଷୁ କୁଟିବାରେ କେବଳ କ୍ଲେଶ ସାର ହୁଏ ଚାଉଳ ମିଳେ ନାହିଁ । ହରିଭକ୍ତି ନ ଥିଲେ ଯେଉଁଥିରେ ମାୟାର ସ୍ପର୍ଶ ନାହିଁ ଏପରି ଯେ ବ୍ରହ୍ମଜ୍ଞାନ ତାହା ମଧ୍ୟ ଫଳଦାୟକ ହୁଏ ନାହିଁ । ଫଳପାଇବା ଆଶାରେ ଯେଉଁ ସବୁ କର୍ମ କରାଯାଏ ସେ ସବୁ ଦୁଃଖର କାରଣ । ଫଳର ଆଶା ନ ରଖି ଯେ ସବୁ କର୍ମ କରାଯାଏ ସେ ସକଳ କର୍ମ ଭଗବାନଙ୍କୁ ସମର୍ପଣ କରା ନ ହେଲେ ଯେ ଫଳଦାୟକ ହେବ ନାହିଁ ଏହା କହିବା ବାହୁଲ୍ୟ ମାତ୍ର ।

ଶିଖରିଣୀ ( ପଦ୍ୟାବଳୀ ଶ୍ଳୋକ-୨୮ )

ସଦାସର୍ବତ୍ରାସ୍ତେ ନନୁ ବିମଳମାଦ୍ୟଂ ତବ ପଦଂ
ତଥାପ୍ୟେକଂ ସ୍ତୋକଂ ନହି ଭବତରୋଃ ପତ୍ରମଭିନତ୍
କ୍ଷଣଂ ଜିହ୍ୱାଗ୍ରସ୍ଥଂ ତବତୁ ଭଗବାନ୍ ନାମ ନିଖିଳଂ
ସମୂଳଂ ସଂସାରେ କଷତି କତରେତ୍ ସେବ୍ୟ ମନୟୋଃ ।

ଶ୍ରୀଧର ସ୍ୱାମୀ ନିଜର ଭାବ ବ୍ୟକ୍ତକରି କହୁଛନ୍ତି ଯେ, ଭଗବାନ୍ ସଦା ନିଜ ଶ୍ରୀଅଙ୍ଗର ପ୍ରଭା ସ୍ୱରୂପ ନିର୍ମଳ, ନିଷ୍କଳ, ନିଷ୍କାରଣ, ନିରାକାର ବ୍ରହ୍ମ ସର୍ବଦା ସର୍ବତ୍ର ବିରାଜମାନ ଅଛନ୍ତି, ତଥାପି ସେ ସଂସାରରୂପୀ ବୃକ୍ଷର ଏକ ଛୋଟ ପତ୍ରକୁ

ମଧ୍ୟ ଛେଦନ କରନ୍ତି ନାହିଁ । କିନ୍ତୁ ହେ ପ୍ରଭୋ, ତୁମ୍ଭର ମଙ୍ଗଳମୟ ନାମ ଯଦି କ୍ଷଣକାଳ ତୁମ୍ଭରି ଅହୈତୁକୀ କୃପାଦ୍ୱାରା ଜିହ୍ୱାର ଅଗ୍ରଭାଗରେ ବିରାଜମାନ କରେ ତେବେ ନାମଗ୍ରାହୀ ଜନର ସଂପୂର୍ଣ୍ଣ ସଂସାର ଶୃଙ୍ଖଳ ସମୂଳ ନଷ୍ଟ କରିଦିଏ । ଅତଏବ ହେ ପ୍ରଭୋ, ତୁମେ ବୁଝାଇ ଦିଅ ଏହି ଦୁଇଟି ମଧ୍ୟରୁ କେଉଁଟି ସେବନୀୟ ।

## ଅନୁଷ୍ଟୁପ୍—ଶ୍ଳୋକ ୪୬

ତ୍ୱତ୍ କଥାମୃତ ପାଥୋଧୌ ବିହରନ୍ତୋ ମହାମୁଦଃ
କୁର୍ବନ୍ତି କୃତିନଃ କେଚ ଚତୁର୍ବର୍ଗଂ ତୃଣୋପମମ୍ ॥

—ଶ୍ରୀ ଶ୍ରୀଧର ସ୍ୱାମୀ ପାଦାନାମ୍

ଶ୍ରୀଧର ସ୍ୱାମୀ ନିଜ ଅନୁରାଗକୁ ପ୍ରକଟ କରୁଅଛନ୍ତି । ହେ ଭଗବାନ୍, କେହି କେହି ପୁଣ୍ୟାତ୍ମା ଏବଂ ସାରାସାର ବିବେକୀ ଜନ ଆନନ୍ଦ ପୂର୍ବକ ତୁମ୍ଭର କଥାମୃତ-ରୂପ ସମୁଦ୍ରରେ ବିହାର କରି ଚତୁର୍ବର୍ଗକୁ ( ଧର୍ମ, ଅର୍ଥ, କାମ ଓ ମୋକ୍ଷ ) ତୃଣବତ୍ ବିବେଚନା କରନ୍ତି ।

ଶ୍ରୀଧର ସ୍ୱାମୀଙ୍କ କୃତ ଆଉ କେତୋଟି ଶ୍ଳୋକ 'କଲ୍ୟାଣ' ସନ୍ତବାଣୀ ଅଙ୍କରୁ ଉଦ୍ଧୃତ ।

ତପନ୍ତୁ ତାପୈଃ ପ୍ରପତନ୍ତୁ ପର୍ବତ୍ୟ—
ଦଟନ୍ତୁ ତୀର୍ଥାନି ପଠନ୍ତୁ ଚାଗମାନ୍
ଯଜନ୍ତୁ ଯାଗୈ ର୍ବିବଦନ୍ତୁ ବାଦୈଃ
ହରିଂ ବିନା ନୈବ ମୃତିଂ ତରନ୍ତି ।

କେହି ତପ କରୁ, ପର୍ବତରୁ ଗର୍ତ୍ତକୁ ପତିତ ହେଉ, ତୀର୍ଥରେ ଭ୍ରମଣ କରୁ, ଶାସ୍ତ୍ର ପଢ଼ୁ, ଯଜ୍ଞ ଯାଗାଦି କରୁ ଅଥବା ତର୍କ ବିତର୍କ ଦ୍ୱାରା ବାଦ ବିବାଦ କରୁ, ପରନ୍ତୁ ଶ୍ରୀହରିଙ୍କ କୃପା ବିନା କେହି ମଧ୍ୟ ମୃତ୍ୟୁକୁ ଲଂଘି ପାରିବେ ନାହିଁ ।

ଉଦାସିଦିଷ୍ଟୁ ଯଃ ପୁଂସା ଶକ୍ତିତୋ ମୁନିବର୍ତ୍ତିଭିଃ
ହନ୍ତି ମୃତ୍ୟୁଭୟଂ ଦେବୋ ହୃଦ୍‌ଗତଂ ତମୁପାସ୍ମହେ ॥

*

ମନୁଷ୍ୟ ମୁନି ଋଷିମାନଙ୍କ ଦ୍ୱାରା ପ୍ରଦର୍ଶିତ ପଦ୍ଧତି ଅନୁସାରେ ଉଦବଦ୍ଧ ସ୍ଥାନରେ ଯାହାଙ୍କର ଚିନ୍ତନ କରନ୍ତି ଆଉ ଯେଉଁ ପ୍ରଭୁ ତାହାଙ୍କର ଚିନ୍ତନ କରିବା ଦ୍ୱାରା ମୃତ୍ୟୁଭୟକୁ ନାଶ କରିଦିଅନ୍ତି ସେହି ହୃଦୟ ସ୍ଥିତ ପ୍ରଭୁଙ୍କୁ ମୁଁ ଉପାସନା କରୁଅଛି ।

ଅହଂ ସଂହରଦଖିଳଂ ସକୃଦ୍ ଉଦୟାଦେବ ସକଳ ଲୋକସ୍ୟ
ତରଣିରିବ ତିମିର ଜଳଧିଂ ଜୟତିର୍ଜଗନ୍ମଙ୍ଗଳଂ ହରେ ର୍ନାମ ॥

ସମ୍ପୂର୍ଣ୍ଣ ଜଗତର ମଙ୍ଗଳକାରୀ ଭଗବାନ୍ ଶ୍ରୀହରିଙ୍କ ନାମ ସର୍ବୋପରି ବିରାଜମାନ । ଥରେ ମାତ୍ର ପ୍ରକଟ ହେବା ମାତ୍ରେ ଏହା ଅଖିଳ ବିଶ୍ୱର ସମସ୍ତ ପାପରାଶି ଏପରି ବିନାଶ କରିଦିଅନ୍ତି, ଯେପରି କି ଭଗବାନ୍ ଭୁବନ-ଭାସ୍କର ଅନ୍ଧକାର-ସମୁଦ୍ରକୁ ଶୋଷି ନିଅନ୍ତି ।

('କଲ୍ୟାଣ' ସନ୍ତବାଣୀ ଅଙ୍କ ପୃ ୧୪୩)

ଶ୍ରୀଧର ସ୍ୱାମୀଙ୍କର ଆତ୍ମପ୍ରକାଶ ଟୀକାର ମଙ୍ଗଳାଚରଣ (୧/୧) ଟୀକାରୁ ଜଣାଯାଏ ଯେ, ସେ କେବଳ ଦ୍ୱୈତବାଦର ଜଣେ ଦଣ୍ଡୀ ସନ୍ନ୍ୟାସୀ ଥିଲେ । ପରେ ସେ ଅଦ୍ୱୈତବାଦର ଶୋଧନ ପାଇଁ ଯତ୍ନପର ହୋଇଥିଲେ ( ଭାବାର୍ଥ ଦୀପିକା —୧୦ । ୮୭) । ସେ ନୃସିଂହ ଉପାସକ ଥିଲେ । ଏହା ତାଙ୍କର ଭାଗବତ ଟୀକାରୁ ଜଣାଯାଏ । ଶ୍ରୀ ଚୈତନ୍ୟ ମହାପ୍ରଭୁ ତାଙ୍କୁ ଗୁରୁ ବୋଲି ସ୍ୱୀକାର କରୁଥିବା କଥା ପୂର୍ବରୁ ସୂଚିତ ହୋଇଅଛି । ଶ୍ରୀମନ୍ ଚୈତନ୍ୟ ମହାପ୍ରଭୁଙ୍କ ଇଙ୍ଗିତରେ ଶ୍ରୀପାଦ ସନାତନ ଗୋସ୍ୱାମୀ ଓ ତାଙ୍କର ବଂଶୀୟ ଓ ପରବର୍ତ୍ତୀ ସନ୍ନ୍ୟାସୀ ଶ୍ରୀପାଦ ଜୀବଗୋସ୍ୱାମୀ ଶ୍ରୀମଦ୍ ଭାଗବତର ଟୀକା ରଚନା କରିଥିଲେ । ଶ୍ରୀପାଦ ଜୀବଗୋସ୍ୱାମୀ ସମଗ୍ର ଭାଗବତର କ୍ରମ ସନ୍ଦର୍ଭ ଟୀକା ରଚନା କରିଥିଲେ । ଶ୍ରୀପାଦ ସନାତନ ଗୋସ୍ୱାମୀ କେବଳ ଦଶମ ସ୍କନ୍ଧର ଟୀକା କରିଥିଲେ ।

"ଶ୍ରୀଧରେର ଆନୁଗତ୍ୟେ ଯେ କରେ ଲିଖନ
ସବ୍ ଲୋକ ମାନ୍ୟକରି କରିବେ ଗ୍ରହଣ ।

( ଚୈ. ଚ. ଅନ୍ତ୍ୟ ୭ । ୧୨୯-୧୩୧ )

ଶ୍ରୀମଦ୍ ଭାଗବତର ଭାବାର୍ଥ ଦୀପିକା ଟୀକାରେ ଶ୍ରୀଧର ସ୍ୱାମୀ (ଭା୧ । ୧ । ୨ ଶ୍ଳୋକ) ଭେଦା-ଭେଦ ଭାବ ସମର୍ଥନ କରି ଭକ୍ତ, ଭକ୍ତିଶାସ୍ତ୍ର ଓ ଜଗତର ନିତ୍ୟତା ଓ ଜଗତ୍‌ର ସତ୍ୟତା ପ୍ରତିପାଦନ କରିଅଛନ୍ତି । *

ଶ୍ଳୋକ—

ଧର୍ମ ପ୍ରୋଜ୍ଝିତ କୈତବୋଽତ୍ର ପରମୋ ନିର୍ମତ୍ସରାଣାଂ ସତାଂ
ବେଦ୍ୟଂ ବାସ୍ତବ ବସ୍ତୁମାତ୍ର ଶିବଦଂ ତାପ ତ୍ରୟୋନ୍ ମୂଳନଂ
ଶ୍ରୀମଦ ଭାଗବତେ ମହାମୁନିକୃତେ କିଂବା ପରୈରୀଶ୍ୱରଃ
ସଦ୍ୟୋହୃଦ୍ୟବରୁଧ୍ୟତେଽତ୍ର କୃତିଭି ଶୁ ଶ୍ରୂଷୁଭିଃ ସ୍ତତ୍କ୍ଷଣାତ୍ ।

ଅର୍ଥ—ମହାମୁନି ବ୍ୟାସଦେବ ଶ୍ରୀମଦ୍ ଭାଗବତର ରଚୟିତା । ଈଶ୍ୱରଙ୍କ ଆରାଧନା ରୂପ ପରମ ତତ୍ତ୍ୱ ଏଥିରେ ନିରୂପିତ ହୋଇଅଛି । ସର୍ବ ପ୍ରାଣୀଙ୍କର କଲ୍ୟାଣକାମୀ ଆସକ୍ତି-ବିଦ୍ୱେଷ-ଶୂନ୍ୟ ସାଧୁମାନେ ଏହି ଧର୍ମକୁ ଗ୍ରହଣ କରିଅଛନ୍ତି । ଯେଉଁ ଧର୍ମ ଫଳ ଲାଭର ଆଶାରେ ଆଚରିତ ଏପରିକି ମୁକ୍ତିପାଇଁ ମଧ୍ୟ, ସେ ଧର୍ମ ଧର୍ମର ଛଳ (କୈତବ) ମାତ୍ର । ତ୍ରିତାପ ନାଶକ ଏହି ଧର୍ମ ଶୁଭଦ ଓ ପରମାର୍ଥଭୂତ ବସ୍ତୁ । ଅନ୍ୟ କୌଣସି ଧର୍ମ ଦ୍ୱାରା କ'ଣ ଈଶ୍ୱରଙ୍କୁ ତତ୍କ୍ଷଣାତ୍ ଲାଭ କରାଯାଏ ? ଯେଉଁମାନେ ଭାଗବତର ପରମ ଧର୍ମ ଶୁଣିବାକୁ ଇଚ୍ଛୁକ, ସେମାନେ ତତ୍କ୍ଷଣାତ୍ ଈଶ୍ୱରଙ୍କୁ ଲାଭ କରନ୍ତି ।

ଶ୍ରୀଧର ସ୍ୱାମୀଙ୍କର ଟୀକା—

ଇଦାନୀ ଶ୍ରୋତୃ ପ୍ରବର୍ତ୍ତନାୟ ଶ୍ରୀଭାଗବତସ୍ୟ କାଣ୍ଡତ୍ରୟ
ବିଷୟେଭ୍ୟଃ ସର୍ବଶାସ୍ତ୍ରେଭ୍ୟଂ ଶ୍ରୈଷ୍ଠ୍ୟଂ ଦର୍ଶୟନ୍ତି ଧର୍ମ ଇତି ।

ଅତ୍ର ଶୀମତି ସୁନ୍ଦରେ ଭାଗବତେ ପରମୋ ଧର୍ମ ନିରୂପ୍ୟତେ । ପରମତ୍ୱେ ହେତୁଃ ପ୍ରକର୍ଷେଣ ଉଜ୍ଝିତଂ କୈତବଂ ଫଳାଭି ସନ୍ଧି ଲକ୍ଷଣଂ କପଟଂ ଯସ୍ମିନ୍ ସଃ । ପ୍ରଶବ୍ଦେନ ମୋକ୍ଷାଭିସନ୍ଧି ରପି ନିରସ୍ତଃ । କେବଳ

* ଟିପ୍‌ପଣୀ—ଶ୍ରୀମଦ୍ ଶଙ୍କରାଚାର୍ଯ୍ୟ କେବଳା ଦ୍ୱୈତବାଦ
ଶ୍ରୀ ରାମାନୁଜ – ଦ୍ୱୈତବାଦ
ଶ୍ରୀ ମଧ୍ୱାଚାର୍ଯ୍ୟ – ବିଶିଷ୍ଟ ଦ୍ୱୈତବାଦ
ଶ୍ରୀ ଚୈତନ୍ୟ – ଅଚିନ୍ତ୍ୟ ଭେଦାଭେଦ

ଈଶ୍ୱରାରାଧନୋ ଧର୍ମ ନିରୂପ୍ୟତେ । ଅଧିକାର ତୋଽପି ଧର୍ମସ୍ୟ ପରମତ୍ୱମାହ । ନିର୍ମତ୍ସରାଣାଂ—ପରୋତ୍କର୍ଷା ସହନଂ ମତ୍ସରଃ, ତଦ୍ ରହିତାନାଂ ସତାଂ ଭୂତାନୁକମ୍ପିନାଂ । ଏବଂ କର୍ମକାଣ୍ଡ ବିଷୟେଭ୍ୟଃ ଶାସ୍ତ୍ରେଭ୍ୟଃ ଶ୍ରୈଷ୍ଠ୍ୟ ମୁକ୍ତଂ । ଜ୍ଞାନକାଣ୍ଡ ବିଷୟେ ଭେ୍ୟାପି ଶ୍ରୈଷ୍ଠ୍ୟମାହ ବେଦ୍ୟମିତି । ବାସ୍ତବଂ ପରମାର୍ଥଭୂତଂ ବସ୍ତୁ ବେଦ୍ୟଂ । ନତୁ ବୈଶେଷିକାଣାମିବ ଦ୍ରବ୍ୟଗୁଣାଦିରୂପଂ । ଯଦ୍ୱା ବାସ୍ତବ ଶବ୍ଦେନ ବସ୍ତୁନୋଽଂଶଃ ଜୀବଃ ବସ୍ତୁନଃ ଶକ୍ତି-ର୍ମାୟା, ବସ୍ତୁନଃ କାର୍ଯ୍ୟଂ ଜଗଛ ତତ୍ ସର୍ବଂ ବସ୍ତ୍ୱେବାନ୍ ତତଃ ପୃଥଗିତି । ବେଦ୍ୟଂ ଅଯତ୍ନେନୈବ ଜ୍ଞାତୁ ଶକ୍ୟମିତ୍ୟର୍ଥଃ । ତତଃ କିମତ ଆହ ଶିବଦଂ ପରମ ସୁଖଦଂ କିଞ୍ଚ ଆଧ୍ୟାତ୍ମାଦି ତାପତ୍ରୟୋନ୍ମୂଳନଞ୍ଚ । ଅନେକ ଜ୍ଞାନକାଣ୍ଡ ବିଷୟେଭ୍ୟଃ ଶ୍ରୈଷ୍ଠ୍ୟଂ ଦର୍ଶିତଂ । କର୍ତ୍ତୃତୋଽପି ଶ୍ରୈଷ୍ଠ୍ୟମାହ ମହାମୁନି ଶ୍ରୀନାରାୟଣଃ ତେନ ପ୍ରଥମଂ ସଂକ୍ଷେପତଃ କୃତେ । ଦେବତା କାଣ୍ଡଗତ ଶ୍ରୈଷ୍ଠ୍ୟମାହ ପରୈଃ ଶାସ୍ତ୍ରୈଃ ତଦୁକ୍ତଂ ସଧନୈର୍ବା ଈଶ୍ୱରଃ ହୃଦି କିଂବା ଏବାବରୁଧ୍ୟତେ ସ୍ଥିରୀକ୍ରିୟତେ ବା ଶଢ କଟାକ୍ଷେ । କିନ୍ତୁ ବିଳମ୍ବେନ କଥଞ୍ଚିଦେବ । ଅତ୍ରତୁ ଶୁଶ୍ରୂଷୁଭିଃ ଶ୍ରୋତୁ ମିଚ୍ଛୁଭିରେବଃ ତତକ୍ଷଣାଦେବାବରୁଧ୍ୟତେ । ନନୁ ଇଦମେବ ତର୍ହି କିମିତି ସର୍ବେ ନ ଶୃଣ୍ୱନ୍ତି ତତ୍ରାହ କୃତିଭିରିତି । ଶ୍ରବଣେଚ୍ଛାତୁ ପୁଣ୍ୟୈର୍ବିନା ନୋତ୍ପଦ୍ୟତ ଇତ୍ୟର୍ଥଃ । ତସ୍ମାଦତ୍ର କାଣ୍ଡତ୍ରୟାର୍ଥସ୍ୟ ଚ ଯଥାବତ୍ ପ୍ରତିପାଦନାଦିଦମେବ ସର୍ବ ଶାସ୍ତ୍ରେଭ୍ୟ ଶ୍ରୈଷ୍ଠ୍ୟଂ ଅତୋ ନିତ୍ୟମେବ ଶ୍ରୋତବ୍ୟମିତି ଭାବଃ ।

ଉଲ୍ଲିଖିତ ଟୀକାନୁସାରେ 'ପ୍ରୋଜ୍ଝିତ କୈତବ' ଶବ୍ଦର ବ୍ୟାଖ୍ୟାରେ ଶ୍ରୀ ଚୈତନ୍ୟ ଚରିତାମୃତକାର ଲେଖିଛନ୍ତି—

ଅଜ୍ଞାନ ତମେର ନାମ କହୟେ କୈତବ
ଧନ ଅର୍ଥ କାମ ମୋକ୍ଷ ବାଞ୍ଛା ଆଦି ସବ
ତାର ମଧ୍ୟେ ମୋକ୍ଷ ବାଞ୍ଛା କୈତବ ପ୍ରଧାନ
ଯାହା ହୈତେ କୃଷ୍ଣଭକ୍ତି ହୟ ଅନ୍ତର୍ଧ୍ୟାନ ।

( ଚୈ. ଚ. ଆଦି—୧ ଅଧ୍ୟାୟ )

"ଶ୍ରୀଧର ସ୍ୱାମୀ ଏହି ବ୍ୟାଖ୍ୟାରେ ପ୍ରଚ୍ଛନ୍ନ ବୌଦ୍ଧବାଦ ବା କେବଳାଦ୍ୱୈତବାଦ ଖଣ୍ଡନ କରିଅଛନ୍ତି । ସାତ୍ୱତ ଆଚାର୍ଯ୍ୟ ଚତୁଷ୍ଟୟ ମଧ୍ୟରେ କେବଳ ଶ୍ରୀ ବିଷ୍ଣୁସ୍ୱାମୀଙ୍କର ସର୍ବଜ୍ଞ ସୂକ୍ତର ୧ । ୭ । ୬ ଓ ୩ । ୧୨ । ୨ ପ୍ରମାଣ

ଉଦ୍ଧାର କରିଅଛନ୍ତି । ଶ୍ରୀଧର ସ୍ୱାମୀ ନିର୍ମିତ ବିଷ୍ଣୁ ପୁରାଣର ଟୀକାରେ ମଧ୍ୟ କେବଳାଦ୍ୱୈତ ମତ ଖଣ୍ଡନରେ ଶୁଦ୍ଧାଦ୍ୱୈତ (ବ୍ରହ୍ମସୂତ୍ର) ବିଚାର ହୋଇଅଛି ( ୬-୧୬-୧୩୬ )-ଭାଗ ( ୧୦ । ୧୪ । ୨୬-୩୯ ) ଭକ୍ତ ଭଗବାନ ଓ ଭକ୍ତର ପାର୍ଥକ୍ୟ (୧୦ । ୮୭ । ୩୧ ) ଚେତନା ଚେତନ ପ୍ରପଞ୍ଚର ପରମାତ୍ମୋପାଦାନତ୍ୱ (୧୦ । ୮୬ । ୨୧ ) ନିର୍ଭେଦ ମୁକ୍ତିର ନିନ୍ଦା ଏବଂ ଶ୍ରବଣ କୀର୍ତ୍ତନାଦି ଭକ୍ତିର ନିତ୍ୟତା ପ୍ରତିପାଦିତ ହୋଇଅଛି ।

ମାୟାବାଦିଗଣ ନିର୍ବିଶେଷ ବ୍ରହ୍ମଙ୍କୁ ପରମତତ୍ତ୍ୱ କହିଲେ ମଧ୍ୟ ସେ (ଶ୍ରୀଧର) ଶ୍ରୀକୃଷ୍ଣଙ୍କୁ ହିଁ ବ୍ରହ୍ମର ପ୍ରତିଷ୍ଠା ବା ଘନୀଭୂତ ବ୍ରହ୍ମ କହିଅଛନ୍ତି ( ଗୀତା ୧୪ । ୨୭ )— ବ୍ରହ୍ମଣୋହି ପ୍ରତିଷ୍ଠାହଂ । ଅଦ୍ୱୈତ୍ୟବାଦିଗଣ ଶ୍ରୀବିଗ୍ରହ, ନାମ, ରୂପ, ଗୁଣ, ବିଭୂତି, ଧାମ ଓ ପରିକରମାନଙ୍କର ନିତ୍ୟତ୍ୱ ସ୍ୱୀକାର ନ କଲେ ମଧ୍ୟ ଶ୍ରୀଧର ଶ୍ରୀବିଗ୍ରହର ସନାତନତ୍ୱ ଅପରିମେୟତ୍ୱାଦି ସ୍ଥାପନ କରିଅଛନ୍ତି । ଭାବାର୍ଥ ଦୀପିକା ( ୧୦ । ୮୭ । ୨ ) । ବିଭୁ ଶବ୍ଦର ବ୍ୟାଖ୍ୟାନ ଅବସରରେ ଭଗବାନଙ୍କର ସଗୁଣ ଗୁଣମୟତ୍ୱର ପ୍ରତିପାଦନ କରିଅଛନ୍ତି । ବିଶେଷ କଥା ସେ ଶ୍ରୀବିଷ୍ଣୁପୁରାଣର ( ୧ । ୩ । ୨ ) ଟୀକାରେ ଅଚିନ୍ତ୍ୟ ଶବ୍ଦର ବ୍ୟାଖ୍ୟାରେ ଅର୍ଥାପତ୍ତି ପ୍ରମାଣ ମୂଳଦ୍ୱାରା ଅଚିନ୍ତ୍ୟ ଭେଦାଭେଦ ବାଦର ବୀଜ ଦେଖାଇ ଅଛନ୍ତି ( ଭା. ଦୀ. ୧୧ । ୨୩ । ୧୦-୧୧୬ ) ଗୀତା ୧୩ । ୧୭—ଆଲୋଚ୍ୟ ।”

Ref.—ଶ୍ରୀ ଶ୍ରୀ ଗୌଡ଼ୀୟ ବୈଷ୍ଣବ ଅଭିଧାନ
୨ୟ, ୩ୟ ଓ ୪ର୍ଥ ଖଣ୍ଡ—୧୩୯୦ ପୃଷ୍ଠା
Chaitanya Research Institute, Calcutta.

ଶ୍ରୀମଦ୍ ଭାଗବତର ୧ମ ସ୍କନ୍ଧର ଆରମ୍ଭରେ ଶ୍ରୀଧର ସ୍ୱାମୀ ଲେଖିଛନ୍ତି—

ଓଁ ନମୋ ଭଗବତେ ପରମହଂସାସ୍ୱାଦିତ ଚରଣ କମଳ ଚିନ୍ ମକରନ୍ଦାୟ ଭକ୍ତଜନ ମାନସ ନିବାସାୟ ଶ୍ରୀକୃଷ୍ଣାୟ ।

ବାଗୀଶା ଯସ୍ୟ ବଦନେ ଲକ୍ଷ୍ମୀର୍ଯସ୍ୟଚ ବକ୍ଷସି
ଯସ୍ୟାସ୍ତେ ହୃଦୟେ ସଂବିତ୍ ତଂ ନୃସିଂହ ମହଂ ଭଜେ । ୧ ।
ବିଶ୍ୱସର୍ଗ ବିସର୍ଗାଦି ନବ ଲକ୍ଷଣ ଲକ୍ଷିତଂ
ଶ୍ରୀକୃଷ୍ଣାଖ୍ୟଂ ପରଂଧାମ ଜଗଦ୍ଧାମ ନମାମି ତତ୍ । ୨ ।

ମାଧବୋମାଧବାବୀଶୌ ସର୍ବସିଦ୍ଧି ବିଧାୟିନୌ
ବନ୍ଦେ ପରସ୍ପରାତ୍ମାନୌ ପରସ୍ପର ନତି ପ୍ରିୟୌ । ୩ ।
ସମ୍ପ୍ରଦାୟାନୁରୋଧେନ ପୌର୍ବାପର୍ଯ୍ୟାନୁସାରତଃ
ଶ୍ରୀଭଗବତ ସାବାର୍ଥ ଦୀପିକେୟଂ ପ୍ରତନ୍ୟତେ । ୪ ।
କ୍ୱାହଂ ମନ୍ଦମତିଃ କ୍ୱେଦଂ ମଥନଂ କ୍ଷୀର ବାରିଧେଃ
କିଂ ତତ୍ର ପରମାଣୁର୍ବୈ ଯତ୍ର ମଜ୍ଜତି ମନ୍ଦରଃ । ୫ ।
ମୂକଂ କରୋତି ବାଚାଳଂ ପଙ୍ଗୁଂ ଲଙ୍ଘୟତେ ଗିରିଂ
ଯତ୍କୃପା ତମହଂ ବନ୍ଦେ ପରମାନନ୍ଦ ମାଧବଂ । ୬ ।

ଶ୍ରୀମଦ୍ ଭାଗବତାଭିଧଃ ସୁରତରୁ ସ୍ତାରଙ୍କୁରଃ ସଜ୍ଜନଃ
ସ୍କନ୍ଧୈର୍ଦ୍ୱାଦଶଭିସ୍ତତଃ ପ୍ରବିଲସଦ୍ ଭକ୍ତ୍ୟାଳ ବାଳୋଦୟଃ
ଦ୍ୱାତ୍ରିଂଶ ତ୍ରିଶତଞ୍ଚ ଯସ୍ୟ ବିଳସତ୍ ଶାଖାଂ ସହସ୍ରାଣ୍ୟଳଂ
ପର୍ଣ୍ଣାନ୍ୟେଷ୍ଟ ଦଶେଷ୍ଟ ଦୋତି ସୁଲଭୌ ବର୍ବର୍ତ୍ତି ସର୍ବୋପରି ।

× × ×

ଶ୍ରୀମଦ୍ ଭାଗବଦ୍‌ଗୀତାର ସୁବୋଧିନୀ ଟୀକା—ଶ୍ରୀଧର ସ୍ୱାମୀ

ଶେଷାଶେଷମୁଖ ବ୍ୟାଖ୍ୟ ଚାତୁର୍ଯ୍ୟଂ ତ୍ୱେକ ବକ୍ତ୍ରତଃ
ଦଧାନମଦ୍ଭୁତଂ ବନ୍ଦେ ପରମାନନ୍ଦ ମାଧବଂ । ୧ ।

ଶ୍ରୀମାଧବଂ ପ୍ରଣମ୍ୟୋ ମାଧବଂ ବିଶ୍ୱେଶ ମାଦରାତ୍
ତଦ୍‌ଭକ୍ତି ଯନ୍ତ୍ରିତଃ କୁର୍ବେ ଗୀତା ବ୍ୟାଖ୍ୟାଂ ସୁବୋଧିନୀଂ । ୨ ।

ଭାଷ୍ୟକାର ମତଂ ସମ୍ୟକ୍ ତଦ୍ ବ୍ୟାଖ୍ୟାତୃ ଗିରସ୍ତଥା
ଯଥାମତି ସମାଲୋକ୍ୟ ଗୀତାବ୍ୟାଖ୍ୟାଂ ସମାରଭେ । ୩ ।

ଗୀତା ବ୍ୟାଖ୍ୟାୟତେ ଯସ୍ୟାଃ ପାଠ ମାତ୍ରାଦଯତ୍ନତଃ
ସେୟଂ ସୁବୋଧିନୀଟୀକା ସଦାଧ୍ୟେୟା ମନୀଷିଭିଃ । ୪ ।

ତତ୍ରଖଳୁ ସକଳ ଲୋକ ହିତାବତାବତାରଃ ପରମକାରୁଣିକୋ ଭଗବାନ୍ ଦେବକୀ ନନ୍ଦନ ସ୍ତତ୍ତ୍ୱଜ୍ଞାନ ବିଜୃମ୍ଭିତ ଶୋକମୋହ ଭ୍ରଂଶିତ ବିବେକତୟା ନିଜଧର୍ମ ପରିତ୍ୟାଗ ପୂର୍ବକ ପରଧର୍ମାଭିସନମର୍ଜୁନଂ ଧର୍ମଜ୍ଞାନରହସ୍ୟୋପଦେଶ ପ୍ଳବେନ ତସ୍ମାତ୍ ଶୋକସାଗରାଦୁଦ୍ଧଧାର ।

ଶ୍ରୀ ବିଷ୍ଣୁ ପୁରାଣର ଆତ୍ମପ୍ରକାଶ ଟୀକା—

ଏଥିରେ କେବଳ ଦ୍ୱୈତ ମତ ଖଣ୍ଡନରେ ଶୁଦ୍ଧାଦ୍ୱୈତ ବିଗ୍ରହ ହୋଇଅଛି ( ୬-୧୬-୧୩)

ଶ୍ରୀଧର ସ୍ୱାମୀ ଅଦ୍ୱୈତବାଦ ପରମ୍ପରାର ଶିଷ୍ୟ ଥିଲେ ମଧ୍ୟ ବସ୍ତୁତଃ ଭକ୍ତି-ପ୍ରଧାନ ଥିଲେ । ଭାରତରେ ପ୍ରଧାନ ନାନକ ପନ୍ଥୀ, ଦଶନାମୀ ଓ ବୈଷ୍ଣବ ଏହି ତିନ ମୁଖ୍ୟ ସମ୍ପ୍ରଦାୟ ପ୍ରଧାନ । ଶ୍ରୀଧର ସ୍ୱାମୀ ଅନ୍ତରରେ ପରମ ବୈଷ୍ଣବ ଥିଲେ । ସୁତରାଂ ଶ୍ରୀ ଚୈତନ୍ୟ ତାଙ୍କୁ ଗୁରୁ ରୂପେ ସମ୍ମାନ ଦେଇ ଅଛନ୍ତି । ତାଙ୍କର ଶ୍ରୀମଦ୍ ଭାଗବତର ଟୀକା ଆଲୋଚନା କଲେ ଜଣାଯାଏ, ସେ ଭଗବାନ ଶ୍ରୀକୃଷ୍ଣଙ୍କର ଦେହ ଅପ୍ରାକୃତ ଓ ଚିନ୍ମୟ ବୋଲି ପ୍ରମାଣ କରି ଯାଇଅଛନ୍ତି । ଏହି ତତ୍ତ୍ୱରେ ଅନେକ ଭାଗବତ ପାଠକ ପ୍ରବେଶ କରିଛନ୍ତି କି ନା ସନ୍ଦେହ ।

ଶ୍ରୀମଦ୍ ଭାଗବତକାର 'କୃଷ୍ଣସ୍ତୁ ଭଗବାନ ସ୍ୱୟଂ'—ବୋଲି ବହୁ ସ୍ଥାନରେ ପ୍ରମାଣ କରି ଅଛନ୍ତି । ଯେଉଁମାନେ ମନେ କରନ୍ତି ଶ୍ରୀକୃଷ୍ଣ ଜରା ଶବରର ଶରାଘାତରେ ଦେହତ୍ୟାଗ କରିଥିଲେ ଏବଂ ତାଙ୍କର ଦେହକୁ ଦାହ କରା ଯାଇଥିଲା, ସେମାନଙ୍କର ଧାରଣା ଯେ ପ୍ରମାଦପୂର୍ଣ୍ଣ ଏହା ପ୍ରମାଣ କରିଛନ୍ତି ସ୍ୱାମୀପାଦ ଶ୍ରୀଧର । ସେ ଭଗବାନ୍ ଶ୍ରୀକୃଷ୍ଣଙ୍କ ଆବିର୍ଭାବ ଓ ତିରୋଭାବ ଲୀଳାର ଆଲୋଚନା କରି ଲେଖିଛନ୍ତି—

ଶ୍ରୀମଦ୍ ଭାଗବତ ୧୦ମ ସ୍କନ୍ଧ ୩ୟ ଅଧ୍ୟାୟ—

ନିଶୀଥେ ତମ ଉଦ୍‌ଭୂତେ ଜାୟମାନେ ଜନାର୍ଦ୍ଦନେ
ଦେବକ୍ୟାଂ ଦେବରୂପିଣ୍ୟାଂ ବିଷ୍ଣୁ ସର୍ବ ଗୁହାଶୟଃ
ଅବିରାସୀଦ୍ ଯଥା ପ୍ରାଚୀଦିଶୀନ୍ଦୁରିବ ପୁଷ୍କଳଃ । ୧୦-୩-୮

ଭାଦ୍ରବ ମାସ କୃଷ୍ଣପକ୍ଷ ଅଷ୍ଟମୀ ତିଥିର ଅର୍ଦ୍ଧରାତ୍ର ସମୟ । ବ୍ରହ୍ମା, ଶିବ ଓ ଇନ୍ଦ୍ରାଦି ଦେବ ବାଞ୍ଛିତ ଶ୍ରୀହରିଙ୍କର ଆବିର୍ଭାବ କାଳ । ପୃଥିବୀ ଘନ ଅନ୍ଧକାରରେ ପରିବ୍ୟାପ୍ତ । ଏହି ଶୁଭ ମୁହୂର୍ତ୍ତରେ ପୂର୍ଣ୍ଣଚନ୍ଦ୍ର ପୂର୍ବ ଦିଗରେ ଉଦିତ ହେବା ପରି ଦେବୀରୂପିଣୀ ଦେବକୀଙ୍କ କୋଳରେ ସର୍ବଗୁହାଶୟ ସର୍ବବ୍ୟାପୀ ଭଗବାନ ଶ୍ରୀକୃଷ୍ଣ ଆବିର୍ଭୂତ ହେଲେ । ( ଦେବକୀଙ୍କର ଗର୍ଭାଦି ସମସ୍ତ ମାୟା । ଚନ୍ଦ୍ର ଯେପରି ପୂର୍ବ ଦିଗରେ ଆବିର୍ଭୂତ ହୁଅନ୍ତି— ବିଷ୍ଣୁ

ଭଗବାନ୍ ନାରାୟଣ ଠିକ୍ ସେହିପରି ଦେବକୀଙ୍କ କୋଳରେ ଆବିର୍ଭୂତ ହେଲେ । ସେ ଅଜନ୍ମା, ତାଙ୍କର ଜନ୍ମ ନାହିଁ । ଏହା ହିଁ ସ୍ୱାମୀପାଦଙ୍କର ବଳିଷ୍ଠ ଅଭିବ୍ୟକ୍ତି । ଏ ବିଷୟରେ ଅଧିକ ଜାଣିବାକୁ ହେଲେ ଉକ୍ତ ଅଧ୍ୟାୟର ସ୍ୱାମୀ ଟୀକା ଦ୍ରଷ୍ଟବ୍ୟ । )

ଶ୍ରୀମଦ୍ଭାଗବତ ଏକାଦଶ ସ୍କନ୍ଧ ୩୧ ଅଧ୍ୟାୟ—

ଭଗବାନ୍ ପିତାମହଂ ବୀକ୍ଷ୍ୟ ବିଭୂତୀରାତ୍ମନୋ ବିଭୁଃ
ସଂଯୋଜ୍ୟାତ୍ମନି ଚାତ୍ମାନଂ ପଦ୍ମନେତ୍ରେ ନ୍ୟମୀଳୟତ୍ । ୫ ।
ଲୋକାଭିରାମାଂ ସ୍ୱତନୁଂ ଧାରଣା ଧ୍ୟାନ ମଙ୍ଗଳଂ
ଯୋଗ ଧାରଣୟାଗ୍ନେୟ୍ୟାଦଗ୍ଧ୍ୱା ଧାମା ବିଶତ୍ ସ୍ୱକଂ । ୬ ।

**ଶ୍ରୀଧର ଟୀକା**—ବିଭୂତୀରହ୍ମାଦୟଃ ପଦ୍ମନେତ୍ରେ ନ୍ୟମୀଳୟଦିତ୍ୟନ୍ୱୟଃ ଭାବଃ । ପୂର୍ବଂ ବ୍ରହ୍ମାଦିଭିଃ ସଲୋକାନ୍ ଲୋକପାଳାନ୍ ନଃ ପାହି ବୈକୁଣ୍ଠ କିଙ୍କରାନ୍ ଇତି ପ୍ରାର୍ଥିତ ତ୍ୱାତ୍ ଇଦମ୍ନାଂ ସ୍ୱ ସ୍ୱ ଲୋକଂ ପ୍ରତିନେତୁଂ ଆଗତତ୍ୱାତ୍ ବହୁଷୂତ ତେଷୁ ଦାକ୍ଷିଣ୍ୟାତ୍ ତାନ୍ ବଞ୍ଚୟିତୁଂ ସମାଧିମେବ କୁର୍ବନ୍ ନେତ୍ରେ ନ୍ୟମୀଳୟଦିତି । ଯୋଗିନାମିବ ସ୍ୱଚ୍ଛନ୍ଦ ମୃତ୍ୟୁଂ ବାରୟତି ଲୋକାଭିରାମାମିତି । ଅୟମର୍ଥଃ ଯୋଗିନଃ ହି ସ୍ୱଚ୍ଛନ୍ଦ ମୃତ୍ୟବଃ ସ୍ୱାଂତନୁମାଗ୍ନେୟ୍ୟାଂ ଯୋଗଧାରଣୟା ଦଗ୍ଧ୍ୱା ଲୋକାନ୍ତରଂ ପ୍ରବିଶନ୍ତି । ଭଗବାନସ୍ତୁ ନ ତଥା କିନ୍ତୁ ଅଦଗ୍ଧ୍ୱୈବ ସ୍ୱତନୁସହିତଂ ସ୍ୱକଂ ଧାମ ବୈକୁଣ୍ଠାଖ୍ୟାମାବିଶତ୍ । ତତ୍ର ହେତୁଃ ଲୋକାଭି-ରାମମାଭିତ ରମଣଂ ସ୍ଥିତିପର୍ଯ୍ୟାଂ ତାମ୍ । ଜଗଦାଶ୍ରୟତ୍ୱେନ ଜଗତୋପି ଦାହ ପ୍ରସଙ୍ଗାଦର୍ଶାର୍ଥଃ । କିଞ୍ଚ ଧାରଣାୟା ଧ୍ୟାନାଞ୍ଚ ମଙ୍ଗଳଂ ଶୋଭନଂ ବିଷୟଂ ଇତରଥା ତର୍ଯ୍ୟୋର୍ନିର୍ବିଷୟତ୍ୱଂ ସ୍ୟାତ୍ଦୃଶ୍ୟତେ ଚୃଦ୍ୟାପି ତଦୁପାସକାନାଂ, ତଦ୍ରୂପ ସାକ୍ଷାତ୍କାର ଫଳପ୍ରାପ୍ତି ଶ୍ଚେତି ଭାବଃ । ଇତ୍ୟାଶୟରାଭି ପ୍ରାୟେଣ ଅଥବା ଯତାଶ୍ରୁତମେବାସ୍ତୁ ଲୋକାଭିରାମାମିତ୍ୟାଦିନାଂ ଆନର୍ଥକ୍ୟ ପ୍ରସଙ୍ଗାତ୍ ତଦପ୍ୟଦଗ୍ଧ୍ୱା ଶ୍ରେଧାୟ୍ନ ନିର୍ଗତ ଇତ୍ୟେବ ସାମ୍ପ୍ରତମ୍ ।

**ଏହାର ଭାବାର୍ଥ**—

ଭଗବାନ୍ ନିଜର ଚିନ୍ମୟ ଦେହ ସହିତ ସ୍ୱୀୟ ଧାମକୁ ଗ୍ଲଲଗଲେ । ଯୋଗୀମାନଙ୍କ ପରି ସେ ନିଜ ଦେହକୁ ଯୋଗାଗ୍ନିରେ ଦଗ୍ଧ କରି

ନାହାନ୍ତି । ତାହା କରିଥିଲେ ସେ ସର୍ବାଶ୍ରୟ ହେତୁ ତାଙ୍କର ଦେହର ଦାହ ହେଲେ ପୃଥିବୀ ମଧ୍ୟ ଦଗ୍ଧ ହେବାର ସମ୍ଭାବନା ।

ପରବର୍ତ୍ତୀ ଶ୍ଳୋକମାନଙ୍କର ଶ୍ରୀ ଶୁକଦେବଙ୍କ ମତ ସମ୍ମତ ମତ ମିଳାଇ ଟୀକାକାର ବଳିଷ୍ଠ ମତ ପ୍ରକାଶ କରିଛନ୍ତି ଯେ, ଭଗବାନ୍ ଦେହତ୍ୟାଗ କରି ନାହାନ୍ତି—ତାଙ୍କ ଦେହର ଦାହ ହେବା ପ୍ରଶ୍ନ ନାହିଁ । ସେ ବ୍ରହ୍ମାଦି ଦେବତାମାନଙ୍କ ଅଲକ୍ଷ୍ୟରେ କେଉଁଆଡ଼େ ଅନ୍ତର୍ହିତ ହୋଇଗଲେ ତାହା କେହି ଦେଖି ପାରିଲେ ନାହିଁ ।

ଭଗବାନ୍ ଶ୍ରୀକୃଷ୍ଣଙ୍କର ନରଦେହକୁ ବା ନର ଲୀଳାକୁ ସର୍ବୋତ୍ତମ ଓ ଚିନ୍ମୟ ବୋଲି ବୈଷ୍ଣବ ଶାସ୍ତ୍ରକାରମାନେ ଯେଉଁ ମତ ବ୍ୟକ୍ତ କରିଅଛନ୍ତି, ତାହାର ମୂଳରେ ଅଛନ୍ତି ସ୍ୱାମୀପାଦ ଶ୍ରୀଧର । ଦୁଃଖର କଥା, ଏହି ଶ୍ରୀଧରଙ୍କୁ ଆମେ ଏଯାବତ୍ ଚିହ୍ନି ପାରି ନାହୁଁ । ଐତିହାସିକମାନେ ତାଙ୍କର ଜନ୍ମସ୍ଥାନ ବା ସାଧନସ୍ଥଳ ସମ୍ବନ୍ଧରେ ଏବେ ମଧ୍ୟ ସନ୍ଦିହାନ । ସ୍ୱାମୀପାଦ ଶ୍ରୀଧର ଯେ ଉତ୍କଳୀୟ ବାଲେଶ୍ୱରବାସୀ—ଶ୍ରୋତ୍ରିୟ ବ୍ରାହ୍ମଣ କୁଳୋଦ୍ଭବ ଏବଂ ଢେଙ୍କାନାଳର କପିଳାସ ଯେ ତାଙ୍କର ପ୍ରଧାନ ସାଧନ ପୀଠସ୍ଥଳ, କପିଳାସର ଶ୍ରୀନୃସିଂହ ଯେ ତାଙ୍କର ପରମ ଆରାଧ୍ୟ, ଇଷ୍ଟଦେବ ଏ ବିଷୟରେ ଆଉ ଭିନ୍ନମତର ଆଶଙ୍କା ନାହିଁ । ଭକ୍ତିପ୍ରଧାନ ଶ୍ରୀମଦ୍ ଭାଗବତ, ଶ୍ରୀବିଷ୍ଣୁ ପୁରାଣ ଓ ଶ୍ରୀମଦ ଭଗବଦ୍ ଗୀତାର ମୁଖ୍ୟ ଟୀକାକାର ଥିବାରୁ ତାଙ୍କର ମତ ଯେ ଭକ୍ତିପ୍ରଧାନ ଏହା ନିଃସନ୍ଦେହରେ କୁହାଯାଇପାରେ । ସେହି ଭାରତ ବିଖ୍ୟାତ ମହାପୁରୁଷ । ଆଚାର୍ଯ୍ୟ ଶ୍ରୀଧରଙ୍କର ଦାର୍ଶନିକ ଅବଦାନ ଚିର ସ୍ମରଣୀୟ ।

ଶ୍ରୀଧର ସ୍ୱାମୀ ଯେ ନୃସିଂହ ଉପାସକ ଥିଲେ ଏ ବିଷୟରେ ଆଉ ଗୋଟିଏ କିମ୍ବଦନ୍ତୀ ପ୍ରଚଳିତ ଅଛି । ବିଷ୍ଣୁଙ୍କର ଚତୁର୍ଥ ଅବତାର ଶ୍ରୀ ନୃସିଂହ ତାଙ୍କର ଗୃହ ଦେବତା ଥିଲେ । ତାଙ୍କର କେତେ ଜଣ ସହୋଦର ଥିଲେ । ପୈତୃକ ସମ୍ପତ୍ତି ବିଭାଗ ସମୟରେ ଭ୍ରାତୃଗଣ ଶ୍ରୀ ନୃସିଂହଙ୍କ ମୂର୍ତ୍ତିଟି ଶ୍ରୀଧରଙ୍କ ପାଇଁ ରଖି ଅବଶିଷ୍ଟ ସମ୍ପତ୍ତି ନିଜ ନିଜ ମଧ୍ୟରେ ବାଣ୍ଟି ନେଇଥିଲେ । ଏଥିରେ ଶ୍ରୀଧରଙ୍କ ମନରେ ତୀବ୍ର ବୈରାଗ୍ୟ ଉଦ୍ଭବ ହେଲା ଏବଂ ସେ ନୃସିଂହ ଦେବଙ୍କୁ ସଙ୍ଗରେ ନେଇ ଗୃହତ୍ୟାଗ କରି ସନ୍ନ୍ୟାସ ନେଲେ ।

*

ସେ କପିଳାସରେ ତାଙ୍କ ଗୁରୁ ଦଣ୍ଡୀସ୍ୱାମୀ ମଠାଧିଶ ଶ୍ରୀ ରାମକୃଷ୍ଣାନନ୍ଦଙ୍କ ଅନ୍ତେ ନିଜେ ମଠାଧିଶ ହୋଇ ନାନା ଶାସ୍ତ୍ର ଅଧ୍ୟୟନ ପୂର୍ବକ ଶ୍ରୀ ନୃସିଂହ ଓ ଶ୍ରୀ ଶିଖରେଶ୍ୱରଙ୍କ ଉପାସନାରେ ବ୍ରତୀ ହୋଇଥିଲେ । ସ୍ୱାମୀ ପାଦ ନୃସିଂହ ମନ୍ତ୍ର ପୁରଶ୍ଚରଣ କରି ନୃସିଂହ ଓ ମହାଦେବଙ୍କ ପ୍ରସାଦରୁ ଭାବାର୍ଥ ଦୀପିକା, ସୁବୋଧିନୀ, ଆତ୍ମପ୍ରକାଶ ପ୍ରଭୃତି ବିଶ୍ୱବିଖ୍ୟାତ ଟୀକାମାନ ପ୍ରଣୟନ କରିପାରିଥିଲେ ।

ତତ୍‌କୃତ ସୁବୋଧିନୀ ଟୀକାରେ ଭକ୍ତିର ପ୍ରାଧାନ୍ୟ ପ୍ରକଟିତ ଥିବାରୁ ସଂକୀର୍ଣ୍ଣଚେତା ଜ୍ଞାନପନ୍ଥୀ ସନ୍ନ୍ୟାସୀ ବୃନ୍ଦ ଏହା ସମର୍ଥନ କରିବାକୁ ଅସମ୍ମତ ହେଲେ । ଉକ୍ତ ଟୀକାର ମୂଲ୍ୟ ନିର୍ଣ୍ଣୟାର୍ଥେ ଏହାର ପ୍ରଥମ ପାଣ୍ଡୁଲିପି ବାରାଣସୀ ବିଶ୍ୱନାଥ ମନ୍ଦିରର ବିଗ୍ରହଙ୍କ ସମ୍ମୁଖରେ ରକ୍ଷିତ ହେଲା । ଭଗବାନ୍ ବିଶ୍ୱନାଥ ସ୍ୱପ୍ନରେ ଆବିର୍ଭୂତ ହୋଇ ଆଦେଶ ଦେଲେ—

ଅହଂ ବେତ୍ତି ଶୁକୋ ବେତ୍ତି ବ୍ୟାସୋ ବେତ୍ତି ନ ବେତ୍ତିବା
ଶ୍ରୀଧର ସକଳଂ ବେତ୍ତି ଶ୍ରୀ ନୃସିଂହ ପ୍ରସାଦତଃ ।

ପୂର୍ବରେ କୁହାଯାଇଅଛି, କପିଳାସରେ ପାର୍ବତୀ ଦେବୀଙ୍କ ମୂର୍ତ୍ତିର ଏକ ପାର୍ଶ୍ୱରେ ଶ୍ରୀ ନୃସିଂହଙ୍କର ମୂର୍ତ୍ତି ସ୍ଥାପିତ ଅଛି । ଶ୍ରୀଧର ସ୍ୱାମୀ ଏହି ନୃସିଂହଙ୍କର ଉପାସନା କରୁଥିଲେ । ଶ୍ରୀ ନୃସିଂହଙ୍କ ଅଙ୍କରେ ମହାଲକ୍ଷ୍ମୀ ବିରାଜମାନା —'ଲକ୍ଷ୍ମୀଯସ୍ୟଚ ବକ୍ଷସି' । ଶ୍ରୀମଦ୍ ଶଙ୍କରାଚାର୍ଯ୍ୟ ଲକ୍ଷ୍ମୀ ନୃସିଂହ ସ୍ତୋତ୍ର ରଚନା କରିଥିଲେ – ତାହାର ପ୍ରତ୍ୟେକ ଶ୍ଳୋକର ଶେଷରେ—

"ଲକ୍ଷ୍ମୀ ନୃସିଂହ ମମଦେହି କରାବଲମ୍ବଂ" ।

ଶ୍ରୀଧରଙ୍କ ପରି ସନ୍ନ୍ୟାସୀମାନେ ଲକ୍ଷ୍ମୀ ନୃସିଂହଙ୍କର ଯୁଗଳ ଉପାସନା କ୍ଷୀଁ କରିଥାନ୍ତି । ଓଡ଼ିଶାର ବିଶେଷତଃ ଢେଙ୍କାନାଳର ବ୍ରାହ୍ମଣମାନଙ୍କ ଗୃହରେ ଶ୍ରୀଲକ୍ଷ୍ମୀ ନୃସିଂହ ବା ଲକ୍ଷ୍ମୀନାରାୟଣ ଉପାସନା ବିଶେଷ ଭାବରେ ପ୍ରଚଳିତ । ନାଗା ସନ୍ନ୍ୟାସୀମାନେ ଶ୍ରୀଲକ୍ଷ୍ମୀ ନୃସିଂହଙ୍କ ନିକଟରେ ନିତ୍ୟ ହୋମ ଓ ପୂଜା କରନ୍ତି ।

ଢେଙ୍କାନାଳର ରାଜଗୁରୁ କନ୍ତିଓ ମଠର ମହନ୍ତ ବ୍ରହ୍ମଚାରୀମାନଙ୍କର ଲକ୍ଷ୍ମୀ ନୃସିଂହ କ୍ଷୀଁ ପରମାରାଧ୍ୟ ଉପାସ୍ୟ ।

## କପିଳାସର ଅବସ୍ଥିତି ଓ ପ୍ରାକୃତିକ ବର୍ଣ୍ଣନା

ପ୍ରାଚୀନ—

ବକୁଳୈଶ୍ଚମ୍ପକୈ ବୃକ୍ଷୈଃ କୋବିଦ୍ଦାରୈଃ ଫଳାନ୍ୱିତୈଃ ।
ତିନ୍ତିଡ଼ି ଖୀରବୃକ୍ଷୈଶ୍ଚ ଖଦିରୈଶ୍ଚଂଚୂକୈସ୍ତଥା ॥
ପାରିଭଦ୍ରୈର୍ନକୁମାଳୈର୍ଧାତ୍ରୀଭିର୍ନାଗକେଶରୈଃ ।
ଜାତିକା ଯୂଥିକାଭିଶ୍ଚ ପୁଷ୍ପୈଶ୍ଚୈବ ସୁବାସିତୈଃ ॥
ତର୍ଗରୈର୍ମଲ୍ଲିଭିଶ୍ଚୈବ କରବୀରୈଃ ସପାଟଳୈଃ ।
ଅଶୋକୈର୍ମାଳତୀଭିଶ୍ଚ ମାଧବୀଭିଃ କଦମ୍ବକୈଃ ॥
ସେବତୀଭିଶ୍ଚ କୁନ୍ଦୈଶ୍ଚ ଚମ୍ପକୈଃ ଶ୍ୱେତରକ୍ତକୈଃ ।
ଏବଂ ନାନାବିଧୈବୃକ୍ଷୈଃ ପୁଷ୍ପୈର୍ନାନାବିଧୈବର୍ଗୈଃ ॥
ବିଶ୍ୱନାଥସ୍ୟ ତତ୍‌ସ୍ଥାନଂ ପୂରିତଂ ବୈସମନ୍ତତଃ
(ଶିଖରେଣଂ ସମାସାଦ୍ୟ ସମ୍ୱସ୍ରର ବ୍ରତାନ୍ୱିତଃ ॥)

(କପିଳ ସଂହିତା)

ଓଡ଼ିଆ ଅନୁବାଦ—

ସେ କଇଳାସ ଥାନ ସେହି, ଗୃହ ପାରୁଚେ ତାର ତହିଁ ।
ଅଛନ୍ତି ନାନା ବୃକ୍ଷମାନେ, ପୁଷ୍ପ ସହିତେ ନାନାବର୍ଣ୍ଣେ ।
ଚମ୍ପା, ବକୁଳ ଆଦି ଯେତେ, ନାନାଦି ପୁଷ୍ପ ଶୋଭା ଯୁକ୍ତେ ।
ଦିଶନ୍ତି ପଲ୍ଲବିତ ହୋଇ, ଯେ ନାରିକେଳ, ଗୁଆ ତହିଁ ।
ଅଛନ୍ତି ଭ୍ରମର ସହିତେ, ଖଜୁରୀ ବନ ଯୂଥେ ଯୂଥେ ।
ଅର୍ଜ୍ଜୁନ ପନସ ବଦରୀ, ଡାଳିମ୍ବ ଯେ କଦଳୀ କୋଳି ।
ଲୋଧ୍ର ପଲାସ ବେଲ ବନ ଅଛି ଯେ ନାରଙ୍ଗ ବିପିନ ।
ଭୃଙ୍ଗ କେଶର ଜମ୍ବୁବନ, ତିନ୍ତୁଳି ବୃକ୍ଷ ଅପ୍ରମିତ ।
ଯେ ଖୀର ବୃକ୍ଷ ବିଟକୋଦର ଖଦିର ଆଦି ମହାକାଳ ।
ଚମ୍ପକ ବୃକ୍ଷ ପାରିଭଦ୍ର, ଶାଳ ତମାଳ ନାଗେଶ୍ୱର ।
ଅଁଳା ଆଦି ବୃକ୍ଷମାନ, ନାନା ଭାବରେ ପରିପୂର୍ଣ୍ଣ ।
ବହୁତ ପୁଷ୍ପ ଛନ୍ତି ତହିଁ, ତଗର ମଲ୍ଲୀ ଯାଇ ଯୂଇ ।

ପାଟଳୀ କରବୀର ମାନେ, ସୁବାସ ଆନୁଆନ ବର୍ଣ୍ଣେ ।
ମାଧବୀ ଅଶୋକ ମାଳତୀ, କଦମ୍ବ କାଞ୍ଚନ ସେବତୀ ।
ତଗର ନାଗକୁନ୍ଦ ପୁଷ୍ପ, ସରବେ ଅଟନ୍ତି ସୁଦୃଶ୍ୟ ।
ଶ୍ୱେତ ରକତ ପୁଷ୍ପମାନ, ବିବିଧ ଭାବେ ପରପୂର୍ଣ୍ଣ ।
ସେ ବିଶ୍ୱନାଥ ପାରୁଶରେ, ସମ୍ପୂର୍ଣ୍ଣେ ଅଛନ୍ତି ତହିଁରେ ।
ଶିଖରେଶ୍ୱର ନାମ ବହି, ଶମ୍ଭୁ ଯେ ଅଛନ୍ତିଟି ତହିଁ ।

( O. S. M - M/S CY/174 )

କପିଳାସ ବର୍ଣ୍ଣନା—୰ ପଣ୍ଡିତ ନାଗନାଥ ଧର ଶର୍ମା

୧ – ଢେଙ୍କାନାଳ ଧରାଂଶ ମଣ୍ଡନ ମହୀଧ୍ରାଣାଂ ବରୋଽୟଂ ଗିରି
ସ୍ତସ୍ମିନ୍ ବିଲ୍ୱ କଦମ୍ବ ଚମ୍ପକ ମହାରଣ୍ୟେ ବସନ୍ ଗମ୍ଭୀରଂ
ସଂସାରାଗମ ଘୋର ନିର୍ଜନ ତପ୍ତା ସ୍ତବ୍ଧେନ୍ଦ୍ରସ୍ଥାଣାଂ ହିଶନ୍
ମହାତ୍ମ୍ୟେ ଶିବବର୍ଣ୍ଣ୍ୟବା ବିଜୟତେ ଚନ୍ଦ୍ରାର୍ଦ୍ଧ ଚୂଡ଼ାମଣି ।୧।

ଢେଙ୍କାନାଳ ଧରା — ମଣ୍ଡନ ଭୂଧର —
ବର ଏହି ମହା ଗିରି
କଦମ୍ବ ଚମ୍ପକ ବିଲ୍ୱ ବକୁଳାଦି
ଦ୍ରୁମେ ଛନ୍ତି ଯହିଁ ପୂରି ।
ମହା ଘୋରବନ ଅଟଇ ନିର୍ଜନ
ସଂସାର ତାପ ବିନାଶୀ
ଅର୍ଦ୍ଧଚନ୍ଦ୍ର ଚୂଡ଼ା— ମଣି ବିଶ୍ୱନାଥ
ଅଛନ୍ତି ତହିଁ ବିଳସି ।

୨— ଝଙ୍କାରୈ ଗିରି ନିର୍ଝରସ୍ୟ ନୟୁତଂ ଶବ୍ଦାୟୁ ମାନମହୋ
ଘୋରାରଣ୍ୟ କୁଳାନ ପୁଷ୍ପ ଲତିକା ଗୁଳ୍ମା ଗମାନ୍ୟା କୁଳୈଃ
ଯସ୍ମିନ୍ ଯାତି ଶିଳାତଳଂ ବିଜଭଦ୍ରୋ ବାଣାସନଂ ବିମ୍ବିତାଂ
ନାନାବର୍ଣ୍ଣ ବିଚର୍ଚ୍ଚିତଂ ରବିକରୈରାପ୍ଲୁତମୌନ୍ଦ୍ରେ ପଟେ ।

ଗିରି ନିର୍ଝରଣୀ କଳନାଦେ ସଦା
ଝଙ୍କୃତ ମହା ଅରଣ୍ୟ
ସୁପୁଷ୍ପ ଲତିକା ଗୁଳ୍ମେ ସମାଚ୍ଛନ୍ନ
ନାନା ବୃକ୍ଷେ ପରିପୂର୍ଣ୍ଣ ।
ବହିଯାଏ ତହିଁ ଶିଳାପଥ ଭେଦି
ପୁଣ୍ୟମୟୀ ବାରିଧାର
ରବିକର ପାତେ ଇନ୍ଦ୍ରଧନୁ ଶୋଭି
ଧରି କେଡ଼େ ମନୋହର ।

୩—ମନ୍ଦାର ଚୂତ ପନସାର୍କ ଖଦୀର ଶାଳୈଃ
ହିନ୍ତାଳ ଲାଙ୍ଗଳୀ ଗୁବାକ ତମାଳ ମାଳୈ
ସିକ୍ତୈଃ ସଦାଚଳ ମନୋଜ୍ଞ ଜଳ ପ୍ରପାତୈ
ର୍ନିରନ୍ଧ୍ର କୀଚକ କୁଳାଯୁତଂ ମହା ବଭୃତ ।

ମନ୍ଦାର ଆମ୍ର ପଣସ ଅର୍କ ଖଦୀର ଭୃଙ୍ଗଶାଳ
ହିନ୍ତାଳ ନାରିକେଳ ଗୁବାକ ଶ୍ୟାମ ତମାଳ ମାଳ
ମନୋଜ୍ଞ ଜଳପ୍ରପାତ ବାରିଧାରାରେ ସଦାସିକ୍ତ
ଘଞ୍ଚ କୀଚକବନ ଶୋଭନ ଅତ୍ୟନ୍ତ ପୁଣ୍ୟବନ୍ତ ।

(ଅନୁବାଦ—କବିଭୂଷଣ)

ଶ୍ରୀମଦ୍ ଭାଗବତରେ ୪ର୍ଥ ସ୍କନ୍ଧ ୬ଷ୍ଠ ଅଧ୍ୟାୟରେ ଗିରିରାଜ କୈଳାସର ଯେପରି ପ୍ରାକୃତିକ ବର୍ଣ୍ଣନା ଦିଆଯାଇଛି, ତାହା ପାଠ କଲେ କପିଳ ସଂହିତାର ବର୍ଣ୍ଣନାର ସାମ୍ୟ ପ୍ରଦର୍ଶନ ପାଇଁ କେତେକ ପଂକ୍ତି ଉଦ୍ଧୃତ ହେଲା ।

ମୟୂର କେକାଭିରୁତଂ ମଦାନ୍ଧାଳି ବିମୂର୍ଚ୍ଛିତଂ
ପ୍ଲାବିତୈ ରକ୍ତ କଣ୍ଠାନାଂ କୂଜିତୈଶ୍ଚ ପତତ୍ରିଣାଂ ।

× × × ×

ମନ୍ଦାରୈଃ ପାରିଜାତୈଶ୍ଚ ସରଳୈ ଶ୍ଚାପି ଶୋଭିତଂ
ତମାଳୈଃ ଶାଳ ତାଳୈଶ୍ଚ କୋବିଦାର ସନାର୍ଜ୍ଜୁନଃ

ଚୂତୈଃ କଦମ୍ବ ନୀପୈଶ୍ଚ ନାଗ ପୁନ୍ନାଗ ଚମ୍ପକୈଃ
ପାଟଳାଶୋକ ବକୁଳୈଃ କୁନ୍ଦୈ କୁରୁବକୈରପି— ଇତ୍ୟାଦି ।

× × × ×

ମୃଗୈଃ ଶାଖାମୃଗୈଃ କୋଡ଼ୈ ମୃଗେନ୍ଦ୍ର ଭକ୍ଷ ଶଲ୍ୟକୈଃ
କଦଳୀ ଷଣ୍ଡ ସଂରୁଦ୍ଧଃ ନଳିନୀ ପୁଳିନଶ୍ରିୟଂ
ବିଟଲକ୍ଷ୍ୟ ଭୂତେଶ ଗିରିଂ ବିବୁଧାଃ ବିସ୍ମୟଂ ଯଯୁଃ ।

ଦକ୍ଷଙ୍କର ଯଜ୍ଞଶାଳାରେ ସତୀଙ୍କର ଦେହ ତ୍ୟାଗ ପରେ ଶିବଙ୍କର ଜଟାରୁ ଜାତ ବୀରଭଦ୍ରଙ୍କ ଦ୍ୱାରା ଦକ୍ଷଯଜ୍ଞର ବିଧ୍ୱଂସ ହୁଏ । ରୁଦ୍ର କୋପ ପ୍ରଶମନାର୍ଥେ ସ୍ୱୟଂ ବ୍ରହ୍ମା ଦେବତାମାନଙ୍କ ସଙ୍ଗରେ ଶିବଙ୍କର କୈଳାସରେ ଉପସ୍ଥିତ ହୁଅନ୍ତି । ଦେବଗଣ କୈଳାସ ପର୍ବତର ପ୍ରାକୃତିକ ରୂପ ମାଧୁର୍ଯ୍ୟରେ ବିମୋହିତ ଓ ଅଭିଭୂତ ହୁଅନ୍ତି । ଶ୍ରୀମଦ୍ ଭାଗବତର ଉଲ୍ଲିଖିତ ବର୍ଣ୍ଣନା ଅତ୍ୟନ୍ତ ଚିତ୍ତାକର୍ଷକ ।

ବସନ୍ତ ଓ ଗ୍ରୀଷ୍ମ କାଳରେ କପିଳାସ ରମଣୀୟ ପ୍ରାକୃତିକ ବୈଭବରେ ପରିପୂର୍ଣ୍ଣ ହୁଏ । ବିବିଧ ବାସନ୍ତୀ କୁସୁମ ପ୍ରସ୍ଫୁଟିତ ହୋଇ ମୃଦୁ ବାୟୁ ସାହାଯ୍ୟରେ ଅନୁପମ ସୌରଭ ବିତରଣ କରନ୍ତି । ନିର୍ଝରର ଶୀତଳ ଜଳରାଶି ସମ୍ପର୍କରେ ଆସି ବାୟୁ ଅତ୍ୟନ୍ତ ସୁଖସ୍ପର୍ଶ ହୁଏ । ସ୍ନାନ ପାନ ଦ୍ୱାରା ପ୍ରାଣୀମାନେ ଗ୍ରୀଷ୍ମ ସନ୍ତାପ ଭୁଲିଯାନ୍ତି । ପ୍ରଭାତ ଓ ନୈଶ ବାୟୁ ଏପରି ଶୀତଳବୋଧ ହୁଏ, ମନେହୁଏ ଗ୍ରୀଷ୍ମଋତୁ ଏହି ପର୍ବତରେ ଆଧିପତ୍ୟ ବିସ୍ତାର କରିବାକୁ ଅକ୍ଷମ । ଆମ୍ବ ଓ ପଣସ ପ୍ରଚୁର ପରିମାଣରେ ମିଳେ । ଗିରିର ପାଦଦେଶରୁ ବହୁ ଦରିଦ୍ର ନର-ନାରୀ ଅରଣ୍ୟରେ ବୁଲି ବୁଲି ପାର୍ବତୀୟ ଆମ୍ବ ( ଗୁ ଚୁଡ଼ି ଆମ୍ବ ) ସଂଗ୍ରହ କରିଥାନ୍ତି । ଆମ୍ବଗଛଗୁଡ଼ିକ ଅତି ବିରାଟକାୟ ଓ ଉଚ୍ଚତାରେ ଆକାଶକୁ ମାପ କଲପରି ପ୍ରତୀୟମାନ ହୁଏ । ବୃକ୍ଷଗୁଡ଼ିକରେ ବହୁ ପରିମାଣରେ ଆମ୍ବ ଫଳେ । ପାଚିଲା ଆମ୍ବଗୁଡ଼ିକ ସୁସ୍ୱାଦୁ ହୋଇଥାଏ । ପଣସଗୁଡ଼ିକ ମଧ୍ୟ ଅତି ବଡ଼ ବଡ଼ ହୁଅନ୍ତି । ବୃକ୍ଷ ଉପରେ ଶାଖାମୃଗମାନେ ବିଚରଣ କରି ପକ୍ୱ ପଣସ ଭୋଜନ କରନ୍ତି । ମଞ୍ଜିଗୁଡ଼ିକ ତଳେ ପଡ଼ିଗଲେ, ଗରିବ ଲୋକେ ସେଗୁଡ଼ିକ ସଂଗ୍ରହ କରନ୍ତି । ଏହିପରି ଭାବରେ ଆମ୍ବ, ପଣସ, କେନ୍ଦୁ, ପ୍ରଭୃତି ଫଳମାନ ଏବଂ ନାନା

ଜାତି କୋଳ ସଂଗ୍ରହ କରି ସେମାନେ ଲୋକାଳୟରେ ବିକ୍ରୟ କରି ଜୀବିକା ନିର୍ବାହ କରନ୍ତି ।

ବର୍ଷାକାଳର ଆରମ୍ଭରେ ଲତା ଗୁଳ୍ମଗୁଡ଼ିକ ନବୀନ ପଲ୍ଲବ ଧାରଣ କରି ବହୁ ତରୁଣ ଶାଖାରେ ପରିପୁଷ୍ଟ ହୋଇଯାଆନ୍ତି । ଅରଣ୍ୟାନି ଏପରି ଘନ ସନ୍ନିବିଷ୍ଟ ହୋଇଯାଏ ଯେ ମଧ୍ୟରେ କୌଣସି ଗମନାଗମନ ପାଇଁ ପଥ ମିଳେ ନାହିଁ । ମାରନ୍ତି ନିବିଡ଼ କୀଚକ ବୃକ୍ଷଗୁଡ଼ିକ ବାତାନ୍ଦୋଳିତ ହୋଇ ମଧୁର ସ୍ୱନରେ ଗିରି ଦେହ ଆଲୋଳିତ କରନ୍ତି । ଏତିକିବେଳେ ନିର୍ଝରର କଳ କଳ ଶବ୍ଦ ଅଧିକ ମାଧୁର୍ଯ୍ୟ ମଣ୍ଡିତ ହୁଏ । କବିବରଙ୍କର ଚିର ମଧୁର ଭାଷା ଭାବୁକ ମନରେ ଜାଗ୍ରତ ହୁଏ ।

ବହଇ ନିର୍ଝର ଝର ଅବିରତ
ବିଶେଷେ ତରଙ୍ଗ ରଙ୍ଗ ରଙ୍ଗଣୀ ଶୋଭିତ ।

ଆକାଶ ମେଘମାଳା ଦ୍ୱାରା ଘନ ସମାଚ୍ଛନ୍ନ ହୁଏ । ଖରଶାଳିତ ବିଭାସ ସମ୍ବିତ ବଜ୍ର ନିନାଦ ମିଳିତ ହୋଇ ପର୍ବତ ଗାତ୍ର ପ୍ରକମ୍ପିତ ହୋଇଉଠେ । ମଡ଼ ମଡ଼ ଶବ୍ଦରେ ବୃକ୍ଷ ଶାଖାମାନ ଭାଙ୍ଗିପଡ଼େ । ଅତି ଉଚ୍ଚ ଅଥଚ କୃଶକାୟ ନାରିକେଳ ଓ ଗୁବାକ ବୃକ୍ଷଗୁଡ଼ିକ ବାୟୁ ପ୍ରବାହରେ ଅବନତ ହୋଇ ଶମ୍ଭୁଙ୍କର ପାଦରେ ପ୍ରଣତି ଜଣାଇଲା ପରି ମନେ ହୁଏ । କୃଷ୍ଣ ଘନ ଦେହରେ ବିଦ୍ୟୁତର ଝଲକ ଶରୀରେ ଚମକପ୍ରଦ ହୁଏ । ଏହି କାଳରେ ମେଘମାଳାର ଶ୍ୟାମକାନ୍ତି ଦୃଶ୍ୟ ଅତୀବ ରମଣୀୟ । ବୃକ୍ଷ ମୂଳରେ ଗଣି ଗଣି ଫଳ ଗଦା ହୋଇଯାଏ । ଲୋକମାନେ ଭଗ୍ନ ଶାଖାମାନଙ୍କର ପତନ ଭୟ ପ୍ରତି ଭ୍ରୂକ୍ଷେପ ନ କରି ଆର୍ଦ୍ର ଦେହରେ ମଧ୍ୟ ଫଳ ସଂଗ୍ରହ କରନ୍ତି । ବାତ୍ୟା ବନ୍ଦ ହୋଇ ଦେଖୁଁ ଦେଖୁଁ ମୂଷଳ ଧାରାରେ ବୃଷ୍ଟିପାତ ହୁଏ । ବେଳେ ବେଳେ ବାୟୁ ପ୍ରବାହରେ ଭାସି ଯାଉଥିବା ମେଘଖଣ୍ଡମାନଙ୍କୁ ହାତରେ ଧରି ହେଲାପରି ପ୍ରତୀତି ଜନ୍ମେ । କପିଳାସରେ ବର୍ଷାକାଳରେ ଠିଆ ହୋଇ ବାୟୁ ପ୍ରବାହରେ ମେଘମାଳାର ଗତି ଦେଖିଲେ କବିବରଙ୍କର ମେଘଦୂତର କବିତା ସ୍ମୃତିପଥାରୂଢ଼ ହୁଏ ।

ମେଘଦୂତ—କବିବର ରାଧାନାଥ ରଥ—ପୂର୍ବମେଘ—

ଘନ କୀଚକରାଜି ବାୟୁ ପୂରିତ
ବଂଶୀ ବାଜିଲା ପ୍ରାୟେ ହୁଏ ନାଦିତ

ହିପୁର-ଜୟ ଗୀତ ମଧୁର ସ୍ୱରେ
କନ୍ନଗ୍ୱକୁଳ କଳକଣ୍ଠୁଁ ନିଃସରେ । ୪୮୪ ।

ତୋ ନାଦେ ମୁଖରିତ କନ୍ଦର ବଜ
ମୁଞ୍ଚବ ମନ୍ଦ୍ର ନାଦ ଯେହ୍ନେ ମୁରୁଜ
ସଙ୍ଗୀତ ଅଭିଳାଷ ବାମଦେବର
ଚରିତାର୍ଥ କରଣ ଲଭିବୁ ବର । ୪୮୮ ।

ଉତ୍କଳର ବରପୁତ୍ର କବିବର ରାଧାନାଥ ତାଙ୍କର ଗ୍ରନ୍ଥାବଳୀରେ ବିଭିନ୍ନ ସ୍ଥାନରେ କପିଳାସ ସମ୍ବନ୍ଧରେ ସଂକ୍ଷିପ୍ତ ବର୍ଣ୍ଣନା ଦେଇ ଅଛନ୍ତି । ପାର୍ବତୀ କାବ୍ୟରେ କପିଳାସର ବର୍ଣ୍ଣନା ସଂକ୍ଷିପ୍ତ ହେଲେହେଁ ମନୋହର । ପ୍ରକୃତି ରସିକ କବିଙ୍କ ଅନ୍ତରରେ କପିଳାସ ଯେ ଗୋଟିଏ ମହତ୍ତ୍ୱ ସ୍ଥାନ ଅଧିକାର କରିଥିଲା, ତାହା ତାଙ୍କର ଲେଖାରୁ ସୂଚିତ ହୁଏ ।

ଅଭ୍ର ଭେଦିଗିରି କପିଳାସେ ଋଷି
ତହୁଁ ଆସିଲେକ ଧାଇଁ ।

× × ×

ସ୍ଫଟିକ ପାବଚ୍ଛ ପଡ଼ିଏ ଯେ ଶୈଳେ
ଶୋଭେ କଳନାଦ ଝର
ରକ୍ତାଶୋକ କୁଞ୍ଜେ ବିରାଜନ୍ତି ଯାର
ମେଖଳେ ଚନ୍ଦ୍ରଶେଖର ।

ନଶୀଥେ ଉଲ୍ଲାଇ କନ୍ନରୀଏ ପକ୍ଷୀ
ଗାଆନ୍ତି ମନ୍ମଥ ସ୍ତବ
ଉତ୍‌କର୍ଣ୍ଣେ ଶୁଣନ୍ତି ହରିଣୀଏ ମୁଗ୍ଧ
ହୋଇ ସେ ସଙ୍ଗୀତ ରବ ।

ଯୋଗୀ ଜନେ ତହିଁ ବହ୍ନି ଜାଳିଥିବେ
ବିଜୟ ସଙ୍କେତ ପାଇଁ
ତା ଦେଖି ହରିଣେ ଦାବାନଳ ଭ୍ରମେ
ଚୌଦିଗେ ଯିବେ ପଳାଇ ।

ତଳେ ମହାରଣ୍ୟେ    କୃଷିକ୍ଷେତ୍ରେ ମଞ୍ଚ
କୃଷିରକ୍ଷୀ କୃଷିବଳ
ନେତ୍ରେ ଜନ୍ମାଇବ    ଚମକ ଚପଳା
ସନ୍ନିଭ ଜ୍ୟୋତି ଚଞ୍ଚଳ ।    ( ପାର୍ବଣ )

କପିଳାସର ରକ୍ତାଶୋକ କୁଞ୍ଜ ମଧ୍ୟରେ ନିଶୀଥରେ କିନ୍ନରମାନଙ୍କର ସଙ୍ଗୀତ ଗାନ କବିଙ୍କର କଳ୍ପନା ବିଳାସର ମଧୁର ସଙ୍କେତ । କବି ଜାଣନ୍ତି, ପର୍ବତର ବିଭିନ୍ନ ଗୁମ୍ଫାରେ କେତେ ଯୋଗୀ ତପଃ ସାଧନ କରିଥାନ୍ତି । ନିମ୍ନ ଦେଶରେ ବିବିଧ କୃଷି କ୍ଷେତ୍ରମାନଙ୍କର କୃଷକମାନେ ମଞ୍ଚା ତିଆରି କରି ବନ୍ୟଜନ୍ତୁମାନଙ୍କ କବଳରୁ ଫସଲ ସୁରକ୍ଷା କରିଥା'ନ୍ତି । ଏହି ଦୃଶ୍ୟ କବିଙ୍କର ସୁପରିଚିତ । ଉତ୍କଳ ଗଜପତିଙ୍କର ବିଜୟ ସଙ୍କେତ ବହନ କରି ଅଗ୍ନିଶିଖା ଯେପରି ଭାବରେ ପର୍ବତମାନଙ୍କ ଉପରୁ କ୍ରମେ କ୍ରମେ ଯାଇ ନୀଳାଚଳ ଧାମରେ ପହଞ୍ଚିଲା, ତାହାର ବର୍ଣ୍ଣନା କବିଙ୍କ ଲେଖନୀରେ ଜୀବନ୍ତ ହୋଇଛି ।

କପିଳାସ ଖୋଳ ନିବାସୀ ଶବର
ଉଡ଼ରଙ୍କ ଢେଙ୍କା ଯା ବଂଶ ଶେଖର
ପର ନାଶେ ପଟୁ ଯାହାଙ୍କ ପରଶୁ
କେତେ ହେଲେ ଆସି ରଣଯଜ୍ଞ ପଶୁ ।
( ନନ୍ଦକେଶରୀ )

ଏହି ପଂକ୍ତିମାନଙ୍କରେ ଢେଙ୍କାନାଳ ରାଜ୍ୟର ନାମକରଣ ଢେଙ୍କା ନାମକ ଶବର ହୋଇଥିବାରୁ ଐତିହାସିକ ସତ୍ୟ କବି ସୂଚାଇ ଦେଇ ଅଛନ୍ତି । ସେତେବେଳେ କପିଳାସର ନିକଟରେ ଶବର ଜାତୀୟ ଲୋକମାନେ ବାସ କରୁଥିଲେ । ମାତ୍ର ଢେଙ୍କା ଶବର ସେ ଅଞ୍ଚଳରେ ରାଜତ୍ୱ କରୁ ନ ଥିଲେ । ଢେଙ୍କାନାଳର ବର୍ତ୍ତମାନ ରାଜବଂଶର ଆଦିରାଜା ହରିସିଂହ ବିଦ୍ୟାଧର କରମୂଳ ପାଟଣାରେ ରାଜତ୍ୱ କରୁଥିଲେ । ବେଣାଳପୁର ଭଞ୍ଜରାଜାମାନେ ଢେଙ୍କା ଶବରକୁ ବିନାଶ କରି ଢେଙ୍କାନାଳ ରାଜ୍ୟରେ ସିଂହାସନ ଅଧିକାର କରିଥିଲେ । ପରେ କରମୂଳ ପାଟଣାର ରାଜା ବେଣାଳପୁର ଭଞ୍ଜ ରାଜାଙ୍କୁ ପରାସ୍ତ କରି ଢେଙ୍କାନାଳକୁ ସ୍ୱୀୟ ଅଧିକାର ଭୁକ୍ତ କଲେ । ଢେଙ୍କାନାଳକୁ ବୀରଭୂମି ମନେ କରି ଏହିଠାରେହିଁ ଦୁର୍ଗ ପ୍ରତିଷ୍ଠା କଲେ । କରମୂଳର ଅନ୍ତର୍ଗତ

*

ଥିବାବେଳେ କପିଳାସ ମନ୍ଦିରର ସୁପରିଚାଳନା ଉକ୍ତ ରାଜାମାନେ କରାଇଥିଲେ ।

ଝର ଉପବୀତଧାରୀ କପର୍ଦ୍ଦି ସେବିତ
କପିଳାସ ଅଭ୍ରଗର୍ଭ ଅଭ୍ରକଂଷ ଗିରି (ମହାଯାତ୍ରା)

× × ×

ଅସ୍ତ ଯାଉଥିଲେ କପିଳାସ ଶୃଙ୍ଗେ
ଏ କାଳେ ଦେବ ତପନ ( ଯଯାତିକେଶରୀ )

କବିବର କଟକରେ ଥାଇ କପିଳାସ ତଥା ସପ୍ତଶଯ୍ୟା ପର୍ବତ ଶିଖରରେ ସୂର୍ଯ୍ୟାସ୍ତର ମନୋହର ଦୃଶ୍ୟ ଅବଲୋକନ କରି ମୁଗ୍ଧ ହେଉଥିଲେ । ମହାନଦୀ କୂଳରେ ଠିଆ ହେଲେ କପିଳାସ ପର୍ବତରେ ସୂର୍ଯ୍ୟାସ୍ତର ଦୃଶ୍ୟ ଅନେକଙ୍କର ଦୃଷ୍ଟିପଥାରୂଢ଼ ହୋଇଥାଏ । କବି ଚକ୍ଷୁରେ ଏ ଦୃଶ୍ୟ ଚିର ଜୀବନ୍ତ, ଚିର ନୂତନ ।

କବି ବ୍ରଜନାଥ ବଡ଼ଜେନାଙ୍କର ରଚିତ 'ଅମ୍ବିକା ବିଳାସ'ରେ କପିଳାସର ବର୍ଣ୍ଣନା ଦେଖାଯାଏ—

ଅନୁକମ୍ପା ଚିତ୍ତେ ବହି ତ୍ରୈଲୋକ୍ୟ ଗୋସାଇଁ
କପିଳାସ ଶୈଳ କନ୍ଦେ ବିଜେ
ଅବ୍‌ଜ କର୍ପୂର ସିନ୍ଦୂର ଆନନ୍ଦ କନ୍ଦର
ଶ୍ରୀ ଚନ୍ଦ୍ରଶେଖର ଦେବରାଜେ ।
ଅନ୍ତର୍ଯ୍ୟାମୀ ସେ ଅଭୀଷ୍ଟ ଫଳଦାତା, କଷ୍ଟ-
ନାଶନ ଦିଶ-ବସନ ହର
ଅନ୍ୟ ଆଶା କରି ଦୂର ତାଙ୍କ ଶ୍ରୀ ପୟର
ବ୍ରଜନାଥ ସେବେ ନିରନ୍ତର

× × ×

ଅଶୋକ କିଂଶୁକ କୁଳ ତମାଳ ବକୁଳ
ଚମ୍ପକ କଦମ୍ବ ନାଗେଶ୍ବର
ଅତସି ଯେ ଗଙ୍ଗ ଶିଉଳି ଟଗର ପାଟଳି
କଞ୍ଚନ କାମିନୀ କରବୀର ।

× × ×

ଆଧୁନିକ କବି ଓ ଲେଖକମାନଙ୍କ ମଧ୍ୟରେ ସ୍ୱର୍ଗତ ଅଧ୍ୟାପକ ଜୟକୃଷ୍ଣ ମିଶ୍ରଙ୍କ 'ମଞ୍ଜୁଳା ମଣି ମାଳିନୀ' ନାମକ କାବ୍ୟରେ କପିଳାସର ବର୍ଣ୍ଣନାରୁ କତିପୟ ପଦ ଏଠାରେ ପ୍ରଦତ୍ତ ହେଲା ।

ଜାଗରେ ଲାଗେ ଯେ ମେଳା      କପିଳାସ ପରେ
ଶେଷ ମୁଖେ ଶେଷ ନୁହେଁ      କାହିଁ ଭିର ନର
ଦୂରପଥୁ ଯାତ୍ରୀ ଦଳ      ଆସି ଆନନ୍ଦରେ
ଉଜାଗର ଜାଳି ସାରା      ରଜନୀ ଜାଗର ।
ପୁତ୍ରକନ୍ୟା ମାନସରେ      କେବା ପତି ପାଇଁ
କାମନାର ସିଦ୍ଧି ପାଇଁ      ସକଳେ ଧାବିତ
ନିଷ୍କାମ ପ୍ରେମିକ ପାଇଁ      କିଛି ଲୋଡ଼ା ନାହିଁ
ପ୍ରେମାକୁଳେ ଗାଏ ମହା      ମହିମା ସଂଗୀତ,
କର୍ମବୀର କହେ ଆହେ      ପୁରୁଷ ପରମ
ନିଯୋଜିବ ଯହିଁ ସେ ମୋ      ଧରମ କରମ ॥

× × ×

ଶୋଭାମୟୀ ଉତ୍କଳର      ଅତୁଳ ସମନେ
କପିଳାସ ! ତୁମେ ସିନା      ଅମୂଲ୍ୟ ସମ୍ପଦ
ଭକତ ଲଭଇ ଯାହା      ସତ୍ୟ ପୂତ ମନେ
ସାକ୍ଷାତରେ ତୁମଠି ସେ      ପରମେଶ ପଦ,
ପ୍ରେମିକକୁ ସହଜେ ତ      ସବୁ ପ୍ରେମମୟ
ପାଷଣ୍ଡ ଦେଖିଲେ ତବ      ଅନୁପମ ଛବି
ଜଗତ ଜଞ୍ଜାଳ ଯିବ      ଭୁଲି ସେ ନିଶ୍ଚୟ
ଶାଶ୍ୱତ ପ୍ରେମରେ ଥରେ      ପ୍ରାଣ ଯିବ ଦ୍ରବି ।
ଫେରିବାକୁ ତଳକୁ ତା      ନ ବଳିବ ମନ
ବିଷ ପରି ମଣିବ ସେ      ପ୍ରିୟା ପୁତ୍ର ଧନ ॥

ଶ୍ରୀ ଚନ୍ଦ୍ରଶେଖରଙ୍କ ସମ୍ବନ୍ଧରେ କେତେକ କବି ଓ ଭକ୍ତ କବିତାମାନ ରଚନା କରିଥିବା ସମ୍ଭବ । ମାତ୍ର ସେ ସବୁ ସୁଲଭ ନୁହେଁ । ଅନୁଗୋଳର ଜନୈକ

ଭକ୍ତ ଶ୍ରୀ ଲୋକନାଥ ଦାଶଙ୍କ 'ଚନ୍ଦ୍ରଶେଖର ଦର୍ଶନ' କବିତାର କେତେକ ଅଂଶ ଏଠାରେ ଉଦ୍ଧାର କରାଯାଉଅଛି ।

"ଝରୁଛି ଗଙ୍ଗା ନୀର    ନିରତେ ଝରଝର
ପବିତ୍ର କରି ବନ ଭୂମି
ଝାଡ଼ ଖୋଲ ଭିତର    ବିଜେ ଚନ୍ଦ୍ରଶେଖର
ପୂଜିତ ବିପ୍ର ଦେବ ମୁନି ହେ, ମହାପ୍ରଭୁ
ଝରରୁ ସ୍ୱଚ୍ଛ ଶୁଭ୍ର ପାଣି
ଝଟିତିରେ ସେବକେ ଆଣି
ଝର ପରାୟେ ଢାଳି    ନିର୍ମଳ ପୀଠସ୍ଥଳୀ
କରନ୍ତି ନିତି ପ୍ରତି ପୁଣି ହେ ମହାପ୍ରଭୁ । ୯ ।

ନଗ ଶିଖର ଦେଶେ    ଭୂମିରୁ ଏକ କୋଶେ
ଅଧିକ ଉଚ୍ଚେ ଅଛ ରହି
ନଗ ମାଳ ବେଷ୍ଟିତ    ତରୁଲତା ଶୋଭିତ
ବନ ପୂଜଇ ଭକ୍ତି ବହି ହେ, ମହାପ୍ରଭୁ
ନର ମାତ୍ର କେତେ ମାତର
ନ ଜାଣେ ଭକ୍ତିହୀନ ନର
ନମନ୍ତି ଯାର ପାଦେ    ସୁରାସୁର ବିବୁଧେ
ପୂଜିତ ହରି ବିରଞ୍ଚିର ହେ, ମହାପ୍ରଭୁ । ୧୦ ।

×    ×    ×

ଆମ୍ର ବିଲ୍ୱ ଚମ୍ପକ    ଗୁବାକ କୁରୁବକ
କଦମ୍ବ ବଟ ନାରିକେଳ
ଆମ୍ରାତକ ଖର୍ଜୁର    ଅଶୋକ କରବୀର
ପନସ କେତକୀ ତମାଳ ହେ, ମହାପ୍ରଭୁ
ଆହୁରି ବୃକ୍ଷଲତା କେତେ
ଆବୃତ ଔଷଧୀର ଯେତେ
ଆମୋଦ କରେ ମନେ    ଋତୁରାଜ ପ୍ରସୂନେ
ଯେଣୁ ବନ୍ଦଇ ଅବିରତେ ହେ ମହାପ୍ରଭୁ । ୧୫ ।

ତଳୁଁ ପାବଚ୍ଛ ମାନ                ଏବେ ହେଲା ନିର୍ମାଣ
ଭକ୍ତଜନଙ୍କ ଧନ ପାଇ
ତେଣୁ ପଥ ଦୁର୍ଗମ                ହୋଇଅଛୁ ସୁଗମ
ତବ ଦର୍ଶନ ଲାଭ ପାଇଁ ହେ, ମହାପ୍ରଭୁ
ତୁମ୍ଭ ଆଶ୍ରୟେ ବହୁ କପି
ତରୁ ଗହଳେ ଛନ୍ତି ବ୍ୟାପି
ତରକ ବୃକ୍ଷଡ଼ାଳେ                ଧର୍ମଶାଳେ ଦେଉଳେ
ନିର୍ଭୟେ ବୁଲନ୍ତି ଅଦ୍ୟାପି ହେ ମହାପ୍ରଭୁ । ୧୬ ।

କବି କପିଳାସ ଦର୍ଶନ କରି ତାଙ୍କ ହୃଦୟର ଭକ୍ତିପୂତ ଅନାବିଳ ଭାବରାଶି ବ୍ୟକ୍ତ କରିଅଛନ୍ତି । ତାଙ୍କ ଲେଖା ପାଠକରି ଓଡ଼ିଶାର ଲବ୍ଧ ପ୍ରତିଷ୍ଠିତ ସାହିତ୍ୟିକ ଶ୍ରୀଯୁକ୍ତ ଶତ୍ରୁଘ୍ନ ନାଥ ଅଭିମତ ଦେଇଛନ୍ତି—

ଏ ଜଣାଣଟି ସରଳ ଛନ୍ଦରେ ଲିଖିତ ହୋଇ ସୁଖ ପାଠ୍ୟ ହୋଇଅଛୁ । ସ୍ଥାନେ ସ୍ଥାନେ ପୌରାଣିକ କିମ୍ବଦନ୍ତୀର ଉଲ୍ଲେଖ ଅଛୁ । ଗୀତିମୟ ପ୍ରକୃତି ବର୍ଣ୍ଣନା ହେତୁ ଏହା ଉପଭୋଗ୍ୟ ହୋଇଅଛୁ । ଆମ୍ଭୋହର୍ଗ କଲେ ମନରେ ଯେଉଁ ଅପାର ଆନନ୍ଦ ଆସେ ତାହା ଏଥିରେ ପ୍ରକାଶ ପାଇଛୁ ।

ଶ୍ରୀ ଶତ୍ରୁଘ୍ନ ନାଥ—ତା ୨୦ । ୧୦ । ୭୪

× × ×

ଢେଙ୍କାନାଳର ମୁକ୍ତାଦେଈପୁର ଶାସନ ନିବାସୀ ସ୍ୱର୍ଗତଃ ଶିକ୍ଷକ ଲୋକନାଥ ରଥଙ୍କ 'ନବ ନିକୁଞ୍ଜରୁ' କେତେକ ପଂକ୍ତି :—

କପିଳାସ—(ବେହାଗ ଆଠତାଳ)

ରାଜ ଚନ୍ଦ୍ରଶେଖର ଶିଖରୀ
ଦେବ ଭବନ ବନ ମାଧୁରୀ ଶିରୀ ଧରି । ଘୋଷା ।
ଖ୍ୟାତ ତୀର୍ଥ ତବ ଶୋଭିତ ଉରସେ
ହରପଦ ନିଃସୃତ ସୁରଧୂନୀ ବିକଟଶ
ହରଶିର ଗୃହିଣୀ କହଇ କି ହରଷେ
ସୁବିମଳ ଶ୍ୟାମଳ ଗାତ୍ର ପୂତ କରି ।

× × ×

ଶାଳ ତାଳ ଯୂଥୀ ଜାତି ତମାଳ
ଚମ୍ପକ କୁରୁବକ ମଲ୍ଲୀ ପିୟାଳ
ମାଳତୀ ମାଧବୀ କେତକୀ ବିଶାଳ
ତବ ଦେହେ ଶୋଭିତ ମନ ବିମୋହିତ କର ।

× × ×

(ବିଭୁ ହେ ଭୁବନାନନ୍ଦ ବର୍ଦ୍ଧନ – ବୃତ୍ତେ)

ସ୍ୱୟମ୍ଭୋ କପିଳାସ ଗିରିରମଣ
ଅଘ ସମୁଚ୍ଚୟ ଗ୍ରସ୍ତ ପିଷ୍ଟପ କ୍ଷୋଭ ଭସ୍ମ ବିଲେପନ—
ଙ୍ଗପ୍ତ ଗାଳ ! ନିମେଷ ମାତ୍ରେ ସକଳ ଦୁଃଖ ନିବାରଣ । ଘୋଷା ।

(ଚନ୍ଦ୍ରଶେଖର ସ୍ତବ)···ଇତ୍ୟାଦି ।

## କପିଳାସ ଗୋଟିଏ ତୀର୍ଥ

ସମଗ୍ର ଉତ୍କଳ ଭୂମି ବହୁ ପବିତ୍ର ତୀର୍ଥମାନଙ୍କ ଦ୍ୱାରା ପ୍ରାଚୀନ କାଳରୁ ବିଖ୍ୟାତ । ଏହି ତୀର୍ଥମାନଙ୍କ ମଧ୍ୟରେ କପିଳାସ ଅନ୍ୟତମ । ଏହାର କ୍ଷେତ୍ର ମହାତ୍ମ୍ୟ କପିଳ ସଂହିତାରେ ବିଶେଷ ଭାବରେ ଲିଖିତ ଅଛି । ଏହି କପିଳ ସଂହିତାର ମୁଖବନ୍ଧରେ ଅଛି ।

ତସ୍ମିନ୍ କ୍ଷେତ୍ରେ ସଦାସନ୍ତି କୃଷ୍ଣାର୍କ ପାର୍ବତୀ ହରା
ଏକସ୍ୟୈକସ୍ୟ କ୍ଷେତ୍ରନ୍ତୁ ସର୍ବପାପ ପ୍ରଣାଶନଂ ।

ଉତ୍କଳ କ୍ଷେତ୍ର (ଦେଶ)ରେ କୃଷ୍ଣ – ଶ୍ରୀ ଜଗନ୍ନାଥଙ୍କ ପୁରୁଷୋତ୍ତମ କ୍ଷେତ୍ର, ଅର୍କ - ସୂର୍ଯ୍ୟକ୍ଷେତ୍ର କୋଣାର୍କ, ପାର୍ବତୀ—ବିରଜାକ୍ଷେତ୍ର ଏବଂ ହର ମହାଦେବ – ଭୁବନେଶ୍ୱର ଶ୍ରୀ ଲିଙ୍ଗରାଜ ଓ କପିଳାସର ଶ୍ରୀ ଚନ୍ଦ୍ରଶେଖର ପ୍ରସିଦ୍ଧ । 'ଅସ୍ମିନ୍ନେ ବୋତ୍କଳେ କ୍ଷେତ୍ରେ କୃଷ୍ଣାର୍କ ପାର୍ବତୀ-ହରାଣାଂ ଶ୍ରୀ ନୀଳାଚଳ କୋଣାର୍କ ବିରଜା ଭୁବନେଶ୍ୱରେତି ଚତ୍ୱାରି ବିଶ୍ୱ ବିଶ୍ରୁତାନି ସୁମହନ୍ତି କ୍ଷେତ୍ରାଣି ବିରାଜନ୍ତେ'— ଶ୍ରୀ ନୀଳାଚଳ, ସୂର୍ଯ୍ୟ, ପାର୍ବତୀ ଓ ଶିବ ବିରାଜମାନ । ମାତ୍ର 'ହରାଃ' ଏହି ବହୁବଚନରୁ ପ୍ରମାଣିତ ହୁଏ ଯେ ଭୁବନେଶ୍ୱର, ମହାବିନାୟକ ଓ କପିଳାସର

ଶିବକ୍ଷେତ୍ରମାନ ପ୍ରସିଦ୍ଧ । ଏଥିରେ କପିଳାସର ନାମ ନ ଥିଲେହେଁ ୯ମ ଅଧ୍ୟାୟରେ ଉଲ୍ଲିଖିତ ଅଛି —

ଋଷୟ ଉଚୁଃ—

ନୀଳାଦ୍ରିସ୍ତୁ ଜନାକୀର୍ଣ୍ଣୋ ବିରଜାଽପ୍ୟ ତତୋଽଧିକଃ
ମୈତ୍ରେୟ ବାଲୁକାକୀର୍ଣ୍ଣଂ ଦୁଃସହଂ ରବିତେଜସା
ତସ୍ମାତ୍ ସର୍ବସମପରଂ କଞ୍ଚିଦସ୍ତି ତପୋଧନ
ଅସ୍ମାକଂ ତପସେ କ୍ଷେତ୍ରଂ ତସ୍ମିନ୍ ଏବଂ ବଦପ୍ରଭୋ ।

ଋଷିମାନେ କହିଲେ ନୀଳାଦ୍ରି ସର୍ବଦା ଜନାକୀର୍ଣ୍ଣ, ବିରଜା (ଯାଜପୁର) ମଧ୍ୟ ତଦ୍ରୂପ, କୋଣାର୍କ ବାଲୁକା ପୂର୍ଣ୍ଣ । ତେଣୁ କେଉଁ ସ୍ଥାନ ଆମ୍ଭମାନଙ୍କର ତପସ୍ୟାର ଉପଯୁକ୍ତ ତାହା ପ୍ରକାଶ କରନ୍ତୁ । ଏହା ଶୁଣି ଶ୍ରୀ ଭରଦ୍ୱାଜ କହିଲେ —

ବକ୍ଷାମି ପରମଂ ପୁଣ୍ୟଂ ସ୍ଥାନଂ ଶମ୍ଭୋ ଦ୍ୱିଜୋତ୍ତମାଃ
ସର୍ବ ପାପ ହରଂ ରମ୍ୟଂ କୈଳାସଂ ସର୍ବତୋତ୍ତମଂ ।

× × ×

କୈଳାସେ ଶଙ୍କର ସ୍ଥାନେ ଯେ ବସନ୍ତି ନରୋତ୍ତମାଃ
ଇହଭୋଗ ଫଳଂ ପ୍ରାପ୍ତି ମୁକ୍ତି ପ୍ରେଷାଂ କରେ ସ୍ଥିତା ।

× × ×

ଆଲୋକ୍ୟ ଶିଖରେଶଞ୍ଚ ପୂଜୟିତ୍ୱା ପ୍ରଣମ୍ୟଚ
ସୁରଭିମାରଣଂ ଦୋଷଂ କ୍ଷିପ୍ରେ ।ର୍ଦ୍ଧିଷ୍ଟଂ ବ୍ରଜେନ୍ନରଃ ।

ସେ ଶମ୍ଭୁସ୍ଥାନ କଇଳାସ — ଯେ ଅତି ଦୁର୍ଲଭ ବିଶେଷ ।
ମୁକତିଦାତା ସେଟି ଜାଣ — ତହିଁ ସକଳ ଦେବଗଣ ।
ଶମ୍ଭୁଙ୍କ ପାଶେ ଛନ୍ତି ନିତ୍ୟେ — ନିର୍ମଳ ଧ୍ୟାନ କରି ଚିତ୍ତେ ।
ଶିଖରେଶ୍ୱରଙ୍କୁ ଯେ ତହିଁ — ଦର୍ଶନ କରନ୍ତି ଯେ ଯାଇଁ ।
ଦଣ୍ଡ ପ୍ରଣାମି ପୂଜା କଲେ — ସୁରଭି ନାଶ ଦୋଷ ଥିଲେ ।
ସେ ପାତ ଭୁଇଁତେ ନାଶନ୍ତି — ସ୍ୱର୍ଗ ଭୁବନକୁ ସେ ଯା'ନ୍ତି ।

(କପିଳ ସଂହିତା-ଉତ୍କଳାନୁବାଦ)

ତସ୍ମିନ୍ନଦ୍ରୌ ଦ୍ୱିଜଶ୍ରେଷ୍ଠା ସ୍ତୀର୍ଥମସ୍ତି ପୟୋଽମୃତଂ
ଅତ୍ରେ ଶ୍ରୀ ଶିଖରେଶସ୍ୟ ଐଶାନ୍ୟଂ ଦିଶମାସ୍ଥିତଂ ।

ହେ ଦ୍ୱିଜୋତ୍ତମମାନେ ସେହି ପର୍ବତର ଶିଖରେଶ୍ୱରଙ୍କ ସମ୍ମୁଖ ଭାଗ —ଐଶାନ ଦିଗରେ ପୟୋମୃତ ନାମକ ବିଖ୍ୟାତ ତୀର୍ଥ ଅଛି ।

କପିଳାସ ଝାଡ଼ଖଣ୍ଡ ମଧ୍ୟରେ ଥିବାରୁ ଏହାର ଖ୍ୟାତି ସର୍ବତ୍ର ବ୍ୟାପ୍ତ ହେବାପାଇଁ ବହୁତ ସମୟ ଲାଗିଲା । ମାତ୍ର ଏକାମ୍ର ( ଭୁବନେଶ୍ୱର ) ଉତ୍କଳର ଶୈବରାଜାମାନଙ୍କ ଦ୍ୱାରା ଶ୍ରୀ ଲିଙ୍ଗରାଜ ମହାଦେବଙ୍କ ପ୍ରତିଷ୍ଠା ପୂର୍ବରୁ କପିଳାସ କ୍ଷେତ୍ରରେ ଚନ୍ଦ୍ରଶେଖରଙ୍କ ପ୍ରତିଷ୍ଠା ହୋଇଥିଲା । ଏହି ଶିବଲିଙ୍ଗ ସ୍ୱପ୍ରତିଷ୍ଠ । କାହାଦ୍ୱାରା ସ୍ଥାପିତ ହୋଇ ନାହାନ୍ତି । ସ୍ୱୟଂଭୂଲିଙ୍ଗ ବୋଲି ଏହାଙ୍କର ଖ୍ୟାତି ଅଛି । ଢେଙ୍କାନାଳରେ ବ୍ରାହ୍ମଣୀ ନଦୀକୂଳରେ ବହୁ ପ୍ରାଚୀନ ଶିବ ମନ୍ଦିର ଦେଖାଯାଏ । ଏସବୁ ଶୈବ ଓ ଶୁଳ୍କୀ ବଂଶୀୟ ରାଜାମାନଙ୍କର କୀର୍ତ୍ତି । ଏଥି ମଧ୍ୟରେ ସମଗ୍ର ଭାରତରେ ଖ୍ୟାତ ଦ୍ୱାଦଶ ଜ୍ୟୋତିର୍ଲିଙ୍ଗଙ୍କ ମଧ୍ୟରୁ ଶ୍ରୀ ନାଗନାଥ ଏକତମ । ଏହି ଜ୍ୟୋତିର୍ଲିଙ୍ଗ କପିଳାସର ଅଳ୍ପଦୂରରେ ବ୍ରାହ୍ମଣୀ ନଦୀକୂଳରେ ଅବସ୍ଥିତ । ଏହା ଭିନ୍ନ କନକେଶ୍ୱର, ମୁକ୍ତେଶ୍ୱର, ଦୌଡ଼େଶ୍ୱର ପ୍ରଭୃତି ବହୁ ପ୍ରାଚୀନ ଶିବଲିଙ୍ଗ ଯୁଗ ଯୁଗ ଧରି ପୂଜିତ ହୋଇ ଆସୁଅଛନ୍ତି । ମାତ୍ର ଏପରି ଏକ ସମୁଚ୍ଚ ପର୍ବତ କନ୍ଦରରେ ଭଗବାନ ଶ୍ରୀ ଚନ୍ଦ୍ରଶେଖରଙ୍କ ଆବିର୍ଭାବ ଲୋକ-ଲୋଚନ ଗୋଚରୀଭୂତ ହେଲା କାଶୀପତି ଶ୍ରୀ ବିଶ୍ୱନାଥଙ୍କ କରୁଣାରେ । ସ୍ୱୟଂ କାଶୀବାସୀ ତପୋରତ ରାଜା ସୌଦାସଙ୍କ ସ୍ୱପ୍ନାଦେଶରେ କହିଥିଲେ, ତୁମେ ଉତ୍କଳକୁ ଯାଇ ସେଠାରେ ମୋର ସ୍ୱରୂପ ଉପାସନା କରି ପବିତ୍ର ହୁଅ । ଏହା ପୂର୍ବରୁ ଉଲ୍ଲିଖିତ ହୋଇଅଛି । ପୁନଶ୍ଚ ପ୍ରଭୁ କହିଥିଲେ—

ମତ୍ ପାର୍ଶ୍ୱେ ଚୈବ ରାଜେନ୍ଦ୍ର (ସୌଦାସ) ତୀର୍ଥନାମ ପୟୋଽମୃତଂ
ଚତୁର୍ବର୍ଗ ପ୍ରଦଂଶ୍ଚୈବ ତତ୍ରାହଂ ଶିଖରେଶ୍ୱରଃ ।

ସେଠାରେ ମୋର ନାମ ଶିଖରେଶ୍ୱର । ମୋର ସେହି ସ୍ୱୟଂ ଜାତ ( ସ୍ୱୟଂଭୂ ଲିଙ୍ଗ ) ଲିଙ୍ଗଙ୍କ ପାର୍ଶ୍ୱରେ ପୟୋଽମୃତ ନାମକ କୁଣ୍ଡ ଅଛି । ସେହି କୁଣ୍ଡର ଜଳରେ ସ୍ନାନ କଲେ ଓ ସେହି ବିମଳ ଜଳ ପାନ କଲେ ଦେହ ମନ

ପବିତ୍ର ହୋଇଯାଏ । ତନ୍ମଧ୍ୟରେ ସ୍ନାନ କଲା ବେଳେ ନିମ୍ନଲିଖିତ ଶ୍ଳୋକ ପାଠ କରିବାକୁ ହୁଏ—

ପୟୋଽମୃତଂ ମହାତୀର୍ଥଂ ପୟସ୍ତେହ୍ୟମୃତୋପମଂ
ଅମୃତତ୍ୱଂ ପ୍ରୟଚ୍ଛାଶୁ କୃତେ ସ୍ନାନେ ତବାମ୍ଭସି ।

**ଅର୍ଥାତ୍** –

ହେ ତୀର୍ଥରାଜ ପୟୋମୃତ ! ତୁମର ଜଳ ଅମୃତ ସଦୃଶ । ତୁମର ଏହି ପବିତ୍ର ଜଳରେ ସ୍ନାନ କରୁଥିବା ମାନବକୁ ତୁମେ ଅମରତ୍ୱ ପ୍ରଦାନ କର ।

ଗଙ୍ଗା ସ୍ନାନ ସମୟରେ ଭକ୍ତମାନେ ଯେପରି ଗାଇଥାନ୍ତି—

ବିଷ୍ଣୁ ପାଦାଗ୍ର-ସମ୍ଭୂତେ ଗଙ୍ଗେ ତ୍ରିପଥ-ଗାମିନି
ଧର୍ମ-ଦ୍ରବୀତି ବିଖ୍ୟାତେ ପାପଂ ମେ ହର ଜାହ୍ନବୀ ।

ହରଜଟା ଭେଦ କରି ପ୍ରବାହିତା ଏହି ପବିତ୍ର ଜଳଧାର ଗଙ୍ଗାଜଳ ପରି ପବିତ୍ର ।

ପୁନଶ୍ଚ ଶ୍ରୀ ମହାଦେବ ଆଜ୍ଞା ଦେଲେ—

ତତ୍ରୈବ ତୀର୍ଥ ପ୍ରବରଂ ମଦଗ୍ରେ ପାପନାଶନଂ
'ଜମ୍ବୁ କୁଣ୍ଡ ମିତି' ଖ୍ୟାତଂ କାଷ୍ଠଦାଗ୍ନେୟ ମାସ୍ଥିତଂ
ପତନ୍ତି ତତ୍ର ଗଙ୍ଗାନ ବାରୀଣି ଶୁଭଦାନି ଚ
ପବିତ୍ରୋଦ୍ଭବ ଶୀତାନି ତତ୍ର ସ୍ନାତ୍ୱା ସୁଖଂ ଲଭେତ୍ ।

'ଜମ୍ବୁକୁଣ୍ଡ'—ଶିବଲିଙ୍ଗଙ୍କ କାଷ୍ଠର ଆଗ୍ନେୟ କୋଣରେ ଅବସ୍ଥିତ । ଏହାର ଜଳ ପୟୋମୃତ କୁଣ୍ଡ ଜଳପରି ବିଶୁଦ୍ଧ ଓ ପବିତ୍ର ।

ଜମ୍ବୁକୁଣ୍ଡେ ନରଃ ସ୍ନାତ୍ୱା ପୂଜୟିତ୍ୱା ମହେଶ୍ୱରଂ
ସର୍ବ ସିଦ୍ଧିମବାପ୍ନୋତି ମତ ପ୍ରସାଦାନ୍ନ ସଂଶୟ ॥

ଏହା ଭିନ୍ନ ମଣିକର୍ଣ୍ଣିକା କୁଣ୍ଡର ବର୍ଣ୍ଣନା ପୂର୍ବରୁ ଲେଖା ହୋଇଅଛି । ଏହା ବୁଢ଼ାଲିଙ୍ଗଙ୍କର ପାର୍ଶ୍ୱବର୍ତ୍ତୀ ।

ତହିଁ ସେ ଲିଙ୍ଗ ରୂପ ଧରି ସାକ୍ଷାତେ ଛନ୍ତି ବିଜେକରି
ହେ ମହୀପାଳ ସେ କ୍ଷେତ୍ରରେ ଶ୍ରୀ ମଣିକର୍ଣ୍ଣିକା ତୀର୍ଥରେ
ତହିଁ ଯେ ନର ନାରୀମାନେ ଶ୍ରାଦ୍ଧାନ କରନ୍ତି ଜନେ
ସେ ବ୍ରହ୍ମହତ୍ୟାଦି ପାପରୁ ମୁକତ ପାଆନ୍ତି ସଂସାରୁ ।

କପିଳ ସଂହିତା ୧୮୨ – ୧୮୫

ଶିବ ପୁରାଣରେ ମଧ୍ୟ କପିଳାସର ଉଲ୍ଲେଖ ଅଛି । କାର୍ତ୍ତିକେୟ ସମଗ୍ର ଭାରତବର୍ଷର ତୀର୍ଥମାନ ପରିଭ୍ରମଣ କରୁଥିବାର ବର୍ଣ୍ଣନା ଦେଖାଯାଏ । ସେ ବିରଜା ମଣ୍ଡଳରେ ପ୍ରବେଶ କରି ବୈତରଣୀ ନଦୀରେ ସ୍ନାନ କଲା ପରେ କୋଳରୂପ ବିଷ୍ଣୁ (ଆଦି ବରାହ) ଙ୍କର ଦର୍ଶନ କରି ବ୍ରାହ୍ମଣୀ ନଦୀ କୂଳରେ ପହଞ୍ଚିଲେ ।

"ସ୍ନାନକରି ସେ ସ୍ଥାନରେ ଦେଖି ବ୍ରହ୍ମବେଦୀ
ସେଠାରୁ ଦେଖିଲେ ଯାଇ ବ୍ୟାସ ଜନ୍ମ ନଦୀ ।
ସେ ନଦୀ ଜଳରେ ସ୍ନାନକରି ଷଡ଼ାନନ
ଶିଖରାଚଳରେ ଯାଇ ମିଳିଲେ ବହନ ।
ସେଠାରେ ଶିଖରେଶ୍ୱର ନାମେ ଶିବ ଲିଙ୍ଗ
ବିଜେ କରି ପାଉଛନ୍ତି ନାନାବିଧ ଭୋଗ ।
ସେ ସ୍ଥାନେ ଅମୃତ ପର୍ପୂର୍ଣ୍ଣରେ ସଦାସେବନ
ସ୍ନାନ ସାରି କଲେ ବୃଦ୍ଧେଶ୍ୱରଙ୍କୁ ଦର୍ଶନ ।
ସେଠାରେ ପାଳଇ ଯେଉଁ ନର ଶିବରାତି
ସକଳ କାମନା ତାଙ୍କୁ ହୁଅଇ ପ୍ରାପତି ।
ନିଷ୍କାମ ଭକ୍ତିରେ ଶିବରାତି ଯେ ତହିଁରେ
ପାଳଇ ତାହାକୁ ବାସ ମିଳେ ଶିବପୁରେ ।
ବୃଦ୍ଧେଶ୍ୱର ଦେଖି କାର୍ତ୍ତିକେୟ ଚଳିଗଲେ
ଶତ୍ରୋପୂଜା ନଦୀ କୂଳେ ପ୍ରବେଶ ହୋଇଲେ ।

(ପଣ୍ଡିତ ରତ୍ନାକର ଗର୍ଗବଟୁଙ୍କ ଦ୍ୱାରା ପଦ୍ୟାନୁବାଦିତ ଓ ପ୍ରକାଶିତ – ୧୯୩୬)

# କପିଳାସ ଗୋଟିଏ ସ୍ୱାସ୍ଥ୍ୟପ୍ରଦ ସ୍ଥାନ

କପିଳାସ ଯେ ଗୋଟିଏ ଅତ୍ୟନ୍ତ ସ୍ୱାସ୍ଥ୍ୟପ୍ରଦ ସ୍ଥାନ ଏହା ବହୁକାଳ ଧରି ଲୋକମାନେ ଅନୁଭବ କରି ଆସୁଅଛନ୍ତି । ଏହାର ଗର୍ଭରେ ଅଭ୍ର ଓ ଲୌହ ଧାତୁ-ମାନ ଥିବାରୁ ଏବଂ ସହସ୍ର ବନୌଷଧି ( ବୃକ୍ଷଲତା ) ଦ୍ୱାରା ଏହାର ଗାତ୍ର ବିମଣ୍ଡିତ ହୋଇଥିବାରୁ ଏହାର ନିର୍ଝର ଜଳ ପରମ ହିତକର । ଜଳ ପ୍ରବାହ ବହୁ ଉଚ୍ଚରୁ ଅସଂଖ୍ୟ ବୃକ୍ଷଲତାଦିଙ୍କର ମୂଳ ଧୌତ କରି ପ୍ରବାହରୂପେ ନିମ୍ନକୁ ଗତିକରି ଥିବାରୁ ରୋଗ ବିନାଶକେ ବୋଲି ବୈଜ୍ଞାନିକ ଗବେଷଣା ଦ୍ୱାରା ପ୍ରମାଣିତ ହୋଇଅଛି । ଏହି ଜଳ ପାନ କଲେ ଅତି ଶୀଘ୍ର ଖାଦ୍ୟ ପରିପାକ ହୁଏ । ଏହାହିଁ ସ୍ୱାସ୍ଥ୍ୟର ଏକ ମୌଳିକ କଥା । ଖାଦ୍ୟ ପରିପାକ ନ ହେବା ହେତୁ ଅନେକ ପ୍ରକାର ରୋଗର ଉତ୍ପତ୍ତି ପ୍ରାୟତଃ ହୋଇଥାଏ । ଚିକିତ୍ସକ-ମାନେ ଅନେକ ରୋଗୀଙ୍କୁ କପିଳାସରେ କିଛିକାଳ ଅବସ୍ଥାନ କରିବାକୁ ଉପଦେଶ ଦେଇଥାନ୍ତି । କେତେକ କୁଷ୍ଠ ରୋଗୀ ଓ ଯକ୍ଷ୍ମା ରୋଗୀ ରୋଗ ଆରମ୍ଭରେ ଏହି କପିଳାସରେ ଅବସ୍ଥାନ ପୂର୍ବକ ନିର୍ଝର ଜଳରେ ସ୍ନାନ କରି ଉପକୃତ ହୋଇ ଅଛନ୍ତି । ସୁରଭି ଶୀତଳ ବାୟୁ ସେବନ, ଶୀତଳ ନିର୍ମଳ ନିର୍ଝର ଜଳରେ ସ୍ନାନ ପାନ, ସଂସାର ଜଞ୍ଜାଳଶୂନ୍ୟ ନୀରବ ବାସ ଏବଂ ସର୍ବୋପରି ଭଗବାନ ଶ୍ରୀ ଚନ୍ଦ୍ରଶେଖରଙ୍କ ଆରାଧନାଦ୍ୱାରା ସାମାନ୍ୟ ଶାରୀରିକ ବ୍ୟାଧି କାହିଁକି ମାନବର ଭବ-ରୋଗ ମଧ୍ୟ ଏଠାରେ ତିରୋହିତ ହୁଏ । କପିଳାସରେ ବାସ କରିବା ପାଇଁ ଧର୍ମଶାଳା ଓ ଟୁରିଷ୍ଟ ସେଣ୍ଟର ଅଛି । ତାହାଛଡ଼ା ବିଭିନ୍ନ ମଠରେ ବା ମୁକ୍ତ ବାୟୁ ଆଲୋକରେ ବାସ କରିବାର ସୁବିଧା ଅଛି ।

୧୮୮୦ ଖ୍ରୀଷ୍ଟାବ୍ଦରେ 'Antiquities of Orissa' ନାମକ ଗ୍ରନ୍ଥର Vol II PP 226 ରେ ଶ୍ରୀ ରାଜେନ୍ଦ୍ରଲାଲ ମିତ୍ର କପିଳାସ ସମ୍ବନ୍ଧରେ ଯେଉଁ ମତ ଦେଇଥିଲେ ତାହା ଏଠାରେ ଉଲ୍ଲେଖ ଯୋଗ୍ୟ । ତାହାର ଓଡ଼ିଆ ଅନୁବାଦ ଏଠାରେ ପ୍ରଦତ୍ତ ହେଲା ।

"କଟକର ଉତ୍ତର ପଶ୍ଚିମରେ ପ୍ରାୟ ୧୫ ମାଇଲ ଦୂରରେ କପିଳ ସଂହିତାରେ ଲିଖିତ ଗୋଟିଏ ପର୍ବତ ଅଛି, ଯାହାର ନାମ 'କୈଳାସ' ଓ ପରେ 'କପିଳାସ' ନାମରେ ନାମାନ୍ତରିତ ହୋଇଅଛି । ଏହାକୁ ମଧ୍ୟ 'ଶମ୍ଭୁକ୍ଷେତ୍ର' କୁହାଯାଏ । ଏହା ଢେଙ୍କାନାଳ ଗଡ଼ଜାତ ରାଜ୍ୟର ପର୍ବତମାଳାର ଦକ୍ଷିଣ ପୂର୍ବ

ବିସ୍ତୃତ ଏବଂ ପ୍ରାୟ ୨୦୦୦ ଫୁଟ ଉଚ୍ଚ ବୋଲି କଥିତ ହୋଇଥାଏ । ଏହାର ଊର୍ଦ୍ଧ୍ବାଂଶ ପ୍ରାୟ ଏକ ମାଇଲ ଲମ୍ବ ଏବଂ ୨୫୦ ଗଜ ଓସାର । ଏଥିରେ ଜଳ ନାହିଁ ଓ ବୃକ୍ଷ ଲତା ଶୂନ୍ୟ । ମାତ୍ର ଏହାର ଚତୁର୍ଦ୍ଦିଗରେ ନାନା ତରୁ-ଲତାରେ ପରିପୂର୍ଣ୍ଣ ଏବଂ ମଧ୍ୟେ ମଧ୍ୟେ ସୁଶୀତଳ ମଧୁର ଜଳଧାର ଅଛି । ଊର୍ଦ୍ଧ୍ୱଦେଶରୁ ୪୦୦ ଫୁଟ ନିମ୍ନରେ ଗୋଟିଏ ମନ୍ଦିର ଅଛି । ଏହି ମନ୍ଦିର ଅଧିଷ୍ଠାତ୍ରୀ ଦେବତାଙ୍କ ନାମ 'ଶିଖରେଶ୍ୱର' ବା 'ଚନ୍ଦ୍ରଶେଖର' । ଶିବଙ୍କର ମୂର୍ତ୍ତି ଲିଙ୍ଗ । ଶିବଙ୍କ ନିକଟରେ ଗୋଟିଏ ସ୍ୱଚ୍ଛ ନିର୍ଝର ଅଛି ଯାହାର ଜଳ ଅତ୍ୟନ୍ତ ପବିତ୍ର ବୋଲି ବିବେଚିତ । କିମ୍ବଦନ୍ତୀରୁ ଜଣାଯାଏ, ସୌଦାସ ନାମକ ଜଣେ ପ୍ରାଚୀନ କାଳର କୌଣସି ନରପତି ଏଠାରେ ବହୁବର୍ଷ ଧରି କଠୋର ତପସ୍ୟା କରି ଶିବଙ୍କର ପ୍ରତ୍ୟକ୍ଷ ଦର୍ଶନ ଲାଭ କରିଥିଲେ । ସେହି ଘଟଣାରୁ ଏହି ପର୍ବତର ଏବଂବିଧ ପବିତ୍ରତା ରହି ଆସିଅଛି । ଶିବ ଏବଂ ତାଙ୍କର ପତ୍ନୀ ପାର୍ବତୀଙ୍କର ପବିତ୍ର ନିବାସ ହେତୁ ଏହା ପରମ ପବିତ୍ର ସ୍ଥଳ । ଏହି ସ୍ଥାନକୁ ଆସିଲେ ମାନବର ସକଳ ପ୍ରକାର ପାପରୁ ନିଷ୍କୃତି ମିଳିବାର କଥା ସାଧାରଣରେ ପ୍ରଚଳିତ । ଏହି ସ୍ଥାନର ଜଳ ସ୍ୱର୍ଗର ଅମୃତ ସଦୃଶ । ଅମୃତ ସତେ ଯେପରି ପ୍ରଚ୍ଛନ୍ନ ଭାବରେ ଏଠାରେ ପ୍ରବାହିତ ହେଉଛି । ମନ୍ଦିରଟି ପ୍ରାୟ ଆଠ ବା ନଅ ଶହ ବର୍ଷ ପୂର୍ବର, ମାତ୍ର ଏଥିରେ କୌଣସି ପ୍ରକାର ଆକର୍ଷଣୀୟ ଶିଳ୍ପ ଚାତୁର୍ଯ୍ୟ ନାହିଁ, ଯାହାକି ପ୍ରତ୍ନତତ୍ତ୍ୱବିତ୍‌ମାନଙ୍କର ଦୃଷ୍ଟି ଆକର୍ଷଣ କରିପାରେ । ଏବେ ସେଠାରେ ପୁରୀ, କଟକ ଓ ବାଲେଶ୍ୱରରେ ରହୁଥିବା ଇଉରୋପୀୟମାନଙ୍କ ପାଇଁ ଗୋଟିଏ ସ୍ୱାସ୍ଥ୍ୟ ନିବାସ କରିବାର ଚେଷ୍ଟା କରା ଯାଉଅଛି ।"

ମିତ୍ର ମହାଶୟଙ୍କର ସେହି ପ୍ରସ୍ତାବ କାର୍ଯ୍ୟକାରୀ ହୋଇ ନାହିଁ । ଏବେ କପିଳାସରେ କେବଳ ଗୋଟିଏ ଟୁରିଷ୍ଟ ସେଣ୍ଟର ଖୋଲା ଯାଇଅଛି ଏବଂ କପିଳାସ ଉପରକୁ ବିଜୁଳିବତୀ ଯିବାର ବ୍ୟବସ୍ଥା କରା ଯାଇଅଛି । ସେଠାରେ ଗୋଟିଏ ଧର୍ମଶାଳା ମଧ୍ୟ ଅଛି ।

କପିଳାସ ଶିଖରରୁ ପଶ୍ଚିମ ଦିଗରେ ଢେଙ୍କାନାଳ ଗଡ଼ ପର୍ଯ୍ୟନ୍ତ ଦେଖାଯାଏ । ଏସବୁ ଗୋଟିଏ ବିରାଟ ସୁଶ୍ୟାମଳ ଅସ୍ତରଣ ପରି ପ୍ରତୀୟମାନ ହୁଏ । ପଶ୍ଚିମ ଦିଗ୍‌ବଳୟରେ ସୂର୍ଯ୍ୟାସ୍ତର ଦୃଶ୍ୟ ପରମ ରମଣୀୟ । ଏହି ଦୃଶ୍ୟ ଦେଖିଲେ ଦର୍ଶକ କେତେକ କାଳ ପାଇଁ ଆତ୍ମବିସ୍ମୃତ ହୋଇଯାଏ ।

କପିଳାସ ନିକଟରେ ଓ ପାଦଦେଶରେ ବହୁତ ଅରଣ୍ୟ। ଏଗୁଡ଼ିକ ସରକାରୀ ସଂରକ୍ଷିତ ଅରଣ୍ୟ। ପୂର୍ବେ ଏସବୁ ଅରଣ୍ୟ ଏପରି ସୁରକ୍ଷିତ ହେଉ-ଥିଲା ଯେ ତହିଁରୁ କେହି କାଠ କାଟିନେବା ସହଜ ନ ଥିଲା। ଏବେ କ୍ରମେ ଯେସବୁ ଅରଣ୍ୟ ସମ୍ପଦ ଲୁଣ୍ଠ ହୋଇ ଯାଉଅଛି। ଅନେକ ସ୍ଥାନରେ ଜଙ୍ଗଲ କଟା ହୋଇ କୃଷିକ୍ଷେତ୍ର ପ୍ରସ୍ତୁତ ହେଲାଣି। ପୂର୍ବେ ରାଜାମାନେ ତାଙ୍କର ଅରଣ୍ୟକୁ ମୂଲ୍ୟବାନ ସମ୍ପଦ ରୂପେ ରକ୍ଷାକରି ଆସୁଥିଲେ। ପୂର୍ବର ଅରଣ୍ୟ ଆଜିର ସ୍ୱପ୍ନ—ଆଉ ସେ ମୃଗ, ବରାହ, ହସ୍ତୀ, ସମ୍ବର ପ୍ରଭୃତି ବନ୍ୟଜନ୍ତୁ ଦେଖିବାକୁ ମିଳନ୍ତି ନାହିଁ। ରାତିରେ ପଲ ପଲ ହରିଣ ଓ ବନ୍ୟ ହସ୍ତୀ ବୁଲାବୁଲି କରୁଥିବାର ଦୃଶ୍ୟ କେତେକ ପର୍ଯ୍ୟଟକ ଯେତେବେଳେ ଦେଖିବାକୁ ପାଉଥିଲେ।

କପିଳାସର ଚତୁର୍ଦ୍ଦିଗ ଘୋରାରଣ୍ୟମୟ ହେଲେ ମଧ୍ୟ ଶିବାଳୟ ହେତୁ କେବେ ସର୍ପ, ବ୍ୟାଘ୍ର ବା ହସ୍ତୀ ଦ୍ୱାରା କେହି ମୃତାହତ ହୋଇ ନାହିଁ। କପିଳାସ-ଠାରୁ ପୂର୍ବ ଦିଗରେ କପିଳାସ ରୋଡ଼ ରେଲରାସ୍ତା ଯାଏ ଦୁର୍ଗମ ଅରଣ୍ୟ ଥିଲା। ଏହା ମଧ୍ୟ ଦେଇ କପିଳାସକୁ ଆସିବାକୁ ରାସ୍ତା ଥିଲେ ମଧ୍ୟ ଏହା ଘୋରାରଣ୍ୟ-ମୟ ଏବଂ ବନ୍ୟଜନ୍ତୁସଂକୁଳ ଥିବାରୁ ପ୍ରାୟଶଃ ଦୁରଧିଗମ୍ୟ ହୋଇଥାଏ। ଏସବୁ ସଂରକ୍ଷିତ ଅରଣ୍ୟରେ କାଠ ବ୍ୟବସାୟୀମାନେ ଅସ୍ଥାୟୀ ଘର ନିର୍ମାଣ କରି କାଠ ସଂଗ୍ରହ କରନ୍ତି। ଏହାର ଜଳବାୟୁ ଅତ୍ୟନ୍ତ ଅସ୍ୱାସ୍ଥ୍ୟକର।

କପିଳାସ ପାଦଦେଶସ୍ଥ ଅରଣ୍ୟାନୀରୁ ଢେଙ୍କାନାଳ ଜଗନ୍ନାଥଙ୍କର ରଥ ପାଇଁ କାଠ ସଂଗ୍ରହ କରାହୁଏ। ଏହି ଅରଣ୍ୟ ସଂରକ୍ଷଣ ପାଇଁ ବିଶେଷ ପଦକ୍ଷେପ ନେବା ଜାତୀୟ ସରକାରଙ୍କର ଏକାନ୍ତ କର୍ତ୍ତବ୍ୟ।

ଏବେ କପିଳାସ ଉପରେ କେତେକ ଉନ୍ନତି ଓ ସଂସ୍କାର କରାଯାଇଛି ଏବଂ ନିମ୍ନ ଦେଶରେ ଗୋଟିଏ ପଶୁ ସଂରକ୍ଷଣ କେନ୍ଦ୍ରର ବ୍ୟବସ୍ଥା କରାଯାଉଅଛି। ଏହି ସ୍ଥାନର ଉନ୍ନତି କଲେ ସର୍ବାଙ୍ଗୀନ ଚେଷ୍ଟା ଯେ ଏକାନ୍ତ ବାଞ୍ଛନୀୟ ଏହା ସମସ୍ତେ ସ୍ୱୀକାର କରିବେ।

ବହୁ କାଳ ଧରି କପିଳାସ ଉପରକୁ ରାତିରେ ଯିବା ପାଇଁ ଶିଶୁକାଠର ନିଆଁହୁଳା ବ୍ୟବହାର କରାଯାଉଥିଲା। ଏହିପରି ହୁଳାସବୁ ପ୍ରସ୍ତୁତ ହୋଇ ଦେବଗ୍ରାମ ଓ କପିଳାସର ମନ୍ଦିର ସରାଘରେ ରଖା ଯାଇଥାଏ। ଏଥିରେ ନିଆଁ

ଲଗାଇଲେ ମଶାଲ ପରି କାର୍ଯ୍ୟ କରେ । ଶିଶୁକାଠରେ ତୈଳ ଥିବା ହେତୁ ଏହା ସହଜରେ ଲିଭେ ନାହିଁ । କପିଳାସରୁ ଫେରିବାବେଳେ ଯାତ୍ରୀମାନେ ଅନେକ ପ୍ରକାରର ଔଷଧର ଚେର, ମୂଳ ଓ ଡାଳ ଏବଂ କପିଳାସର ପ୍ରସିଦ୍ଧ ବାଉଁଶ ଠେଙ୍ଗା ନେଇ ଯାଆନ୍ତି ।

## କପିଳାସରେ ଶ୍ରୀମହାଦେବଙ୍କର ଯାତ୍ରା ପର୍ବ

ଶ୍ରୀମହାଦେବଙ୍କର ସକଳ ପ୍ରକାର ଯାତ୍ରା ପର୍ବାଦି ଉତ୍କଳ ପ୍ରସିଦ୍ଧ ପୁରାଣ ସଂହିତାଦି ଅନୁସାରେ କପିଳାସରେ ଯଥାବିଧି ଅନୁଷ୍ଠିତ ହୋଇଥାଏ । ଏଥିମଧ୍ୟରେ ଜାଗର ଯାତ୍ରା ସୁପ୍ରସିଦ୍ଧ । ଓଡ଼ିଶାର ବିଭିନ୍ନ ସ୍ଥାନରେ ଜାଗର ଯାତ୍ରା ଅନୁଷ୍ଠିତ ହେଉଥିଲେହେଁ କପିଳାସର ଜାଗର ସର୍ବଶ୍ରେଷ୍ଠ ବୋଲି ବିବେଚିତ ହୋଇ ଆସୁଅଛି । ଏହି ଯାତ୍ରାରେ ସମଗ୍ର ଉତ୍କଳରୁ ବହୁଯାତ୍ରୀ ସମବେତ ହୁଅନ୍ତି । ଜାଗର ଯାତ୍ରାର ଉଦ୍ଦେଶ୍ୟ ଶିବ କ୍ଷେତ୍ରରେ ଶିବଙ୍କ ସନ୍ନିଧିରେ ସାରା ଦିବସ ଉପବାସ କରି ରାତିରେ ଉଜାଗର ରହି ଅଖଣ୍ଡ ପ୍ରଦୀପ ଜାଳିବାକୁ ହୁଏ । ଏହି ବ୍ରତ ଅତ୍ୟନ୍ତ ପବିତ୍ର ଓ ସର୍ବବିଧ ଫଳପ୍ରଦ । ଫାଲ୍‌ଗୁନ କୃଷ୍ଣ ଚତୁର୍ଦ୍ଦଶୀ ତିଥିରେ ଏହି ଶିବରାତ୍ରି ବ୍ରତ ପାଳିତ ହୁଏ । ଏ ବିଷୟରେ ସ୍କନ୍ଦ ପୁରାଣରେ ବର୍ଣ୍ଣିତ ହୋଇଅଛି—

ମାଘ ମାସସ୍ୟ ଶେଷେ ବା ପ୍ରଥମେ ଫାଲ୍‌ଗୁନ ସ୍ୟଚ
କୃଷ୍ଣା ଚତୁର୍ଦ୍ଦଶୀ ସାତୁ ଶିବରାତ୍ରି ଚତୁର୍ଦ୍ଦଶୀ ।

ମାଘ ମାସର ଶେଷରେ କିମ୍ବା ଫାଲ୍‌ଗୁନ ମାସର ପ୍ରଥମେ କୃଷ୍ଣପକ୍ଷର ଚତୁର୍ଦ୍ଦଶୀ ହିଁ ଶିବରାତ୍ରି ଚତୁର୍ଦ୍ଦଶୀ । ମାଘୀ ପୂର୍ଣ୍ଣିମାର ପରବର୍ତ୍ତୀ ଚତୁର୍ଦ୍ଦଶୀରେ ଶିବରାତ୍ରି ହୁଏ । ମୃତ୍ତିଶାସ୍ତ୍ର ମତରେ 'ପ୍ରଦୋଷବ୍ୟାପିନୀ ଗ୍ରାହ୍ୟା ଶିବରାତ୍ରୀ ଚତୁର୍ଦ୍ଦଶୀ ।' ପୂର୍ବଦିନର ଅମାନିଶାରେ ଚତୁର୍ଦ୍ଦଶୀର ଅଲାଭ ହେଲେ ଯଦି ପରଦିନ ପ୍ରଦୋଷ ସମୟରେ ଚତୁର୍ଦ୍ଦଶୀର ପ୍ରାପ୍ତି ହୁଏ ତେବେ ପରଦିନରେ ଶିବରାତ୍ରି ବ୍ରତ ପାଳିତ ହୁଏ ।

ଫାଲ୍‌ଗୁନୀ କୃଷ୍ଣା ଚତୁର୍ଦ୍ଦଶୀ ମହାତିଥିରେ ଉପବାସ ରହି ସମଗ୍ର ରାତ୍ରି ଜାଗରଣ ଦ୍ୱାରା ଶିବପୂଜା ଓ ଶିବ ହୋମାଦି ଦ୍ୱାରା ମୋକ୍ଷ ପ୍ରାପ୍ତି ହୁଏ । ଶିବରାତ୍ରି ବ୍ରତ କଥା 'ଶିବ ରହସ୍ୟ'ରେ ଲିଖିତ ଅଛି—

କୈଳାସ ଶିଖରରେ ଦିନେ ଉମା ଶିବଙ୍କୁ ପ୍ରଶ୍ନ କଲେ, "ହେ ଭଗବାନ, ତୁମେ ପରିତୁଷ୍ଟ ହେଲେ ଜୀବକୁ ଧର୍ମ, ଅର୍ଥ, କାମ, ମୋକ୍ଷ ଏହି ଚତୁର୍ବର୍ଗ ପ୍ରଦାନ କର । ଅତଏବ କି କର୍ମ ବା ବ୍ରତ ବା ତପସ୍ୟା କଲେ ତୁମେ ଶୀଘ୍ର ପ୍ରସନ୍ନ ହୁଅ ?" ଭଗବାନ ଶଙ୍କର ଆନନ୍ଦିତ ହୋଇ ଉତ୍ତର ଦେଲେ, 'ଗୌଣ ଫାଲ୍‌ଗୁନ ମାସର କୃଷ୍ଣପକ୍ଷରେ ଚତୁର୍ଦ୍ଦଶୀ ତିଥି ପଡ଼େ । ଏହାର ତାମସୀ ରାତିହିଁ ଶିବରାତି । ଏହି ଚତୁର୍ଦ୍ଦଶୀରେ ଉପବାସ କଲେ ମୁଁ ପ୍ରସନ୍ନ ହୁଏ ।

**ବ୍ରତ ବିଧି :—**

ପୂର୍ବଦିନ ତ୍ରୟୋଦଶୀ ତିଥିରେ ସ୍ନାନ କରି ବ୍ରହ୍ମଚର୍ଯ୍ୟ ଓ ସମାହିତ ହୋଇ ହବିଷ୍ୟାନ୍ନ ଏକବାର ମାତ୍ର ଖାଇବାକୁ ହୁଏ । କଦାପି ଏହାର ଅନ୍ୟଥା ହେବ ନାହିଁ । ରାତିକାଳରେ ମୋର ନାମ ସ୍ମରଣ କରି ପରିଷ୍କୃତ ସ୍ଥାନରେ କୁଶ ଶଯ୍ୟାରେ ଶୋଇବ । ରାତି ଶେଷରେ ଶଯ୍ୟା ତ୍ୟାଗ କରି ମଳମୂତ୍ର ତ୍ୟାଗ, ଦନ୍ତଧାବନ ଓ ପ୍ରାତଃସ୍ନାନ କରିବ । ତତ୍‌ପରେ ଦେବ ପୂଜା ଓ ମଧ୍ୟାହ୍ନ ସନ୍ଧ୍ୟା ଏବଂ ସାୟଂକାଳରେ ସାୟଂ ସନ୍ଧ୍ୟା ଯଥାଶାସ୍ତ୍ର ସମାପନାନ୍ତେ ନଦୀ ତୀରରେ ଅଥବା ଶୁଦ୍ଧ ସ୍ଥାନରେ ସ୍ଥାବର ( ଅଚଳ ) ଶିବ ଲିଙ୍ଗ ଅଥବା ସଚଳ ଶିବଲିଙ୍ଗରେ ବିଲ୍ୱପତ୍ର ଦ୍ୱାରା ଲିଙ୍ଗପୀଠ ସମାର୍ଜନ କରି ଶିବପୂଜା କରିବ । ଶିବପୂଜାରେ ସକଳ ପୁଷ୍ପ ଅପେକ୍ଷା ବିଲ୍ୱପତ୍ର ଉତ୍କୃଷ୍ଟତର । ବିଲ୍ୱପତ୍ରରେ ଶିବଙ୍କର ଯେପରି ସନ୍ତୋଷ ହୁଏ, ମଣିମୁକ୍ତା, ପ୍ରବାଳ ଓ ସ୍ୱର୍ଣ୍ଣ ଭୂଷଣାଦିରେ ତଦ୍ରୂପ ହୁଏ ନାହିଁ । ରାତିର ଚାରି ପ୍ରହରରେ ଚାରିଥର ଶିବଲିଙ୍ଗଙ୍କର ସ୍ନାନ ଓ ଗନ୍ଧ ପୁଷ୍ପାଦି ଦ୍ୱାରା ବିଶେଷ ରୂପେ ପୂଜା କରିବ । ପ୍ରଥମ ପ୍ରହରରେ ଦୁଗ୍ଧ, ୨ୟ ପ୍ରହରରେ ଦଧି, ତୃତୀୟ ପ୍ରହରରେ ଘୃତ ଓ ୪ର୍ଥ ପ୍ରହରରେ ମଧୁ ଦ୍ୱାରା ସ୍ନାନ କରାଇବାକୁ ହୁଏ । ନାରଦକୃତ ପଞ୍ଚରାତ୍ର ବିଧାନରେ ଓ ମୂଳମନ୍ତ୍ର ଯଥାଶକ୍ତି ନୃତ୍ୟ ଗୀତାଦି ସହ ଶିବଙ୍କୁ ପୂଜା କରିବାକୁ ହୁଏ । ଅନନ୍ତର ପରଦିନ ଶିବଭକ୍ତ ଓ ଶୁଦ୍ଧବ୍ରତଧାରୀ ବ୍ରାହ୍ମଣମାନଙ୍କୁ ଭୋଜନ କରାଇ ଓ ଦକ୍ଷିଣାଦି ଦ୍ୱାରା ତୁଷ୍ଟ କରାଇ ନିଜେ ପାରଣା କରିବ । ମହାଦେବ କହିଲେ, 'ହେ ଦେବି ଭକ୍ତ ରୂପେ ଏହି ବ୍ରତ ଧାରଣ କଲେ ତାହା ମୋର ପରମ ପ୍ରୀତିକର ହୁଏ । ଯଜ୍ଞ ଦାନ ଓ ତପସ୍ୟା ଏହାର ଷୋଳ ଭାଗରୁ ଏକଭାଗ ନୁହେଁ । ଏହି ବ୍ରତ ପ୍ରଭାବରେ ମୋର ପ୍ରମଥ ଗଣଙ୍କ ଉପରେ କର୍ତ୍ତୃତ୍ୱ ଲାଭ ହୁଏ ଏବଂ ଇଚ୍ଛା ସପ୍ତଦ୍ୱୀପା ପୃଥିବୀର ଆଧିପତ୍ୟ ମିଳେ । ବ୍ରତକଥାର ଶେଷରେ ଲେଖା ଅଛି—

ଅଶ୍ୱମେଧ ତୁଲ୍ୟ ଯଜ୍ଞ ନାହିଁ, ଗଙ୍ଗା ତୁଲ୍ୟ ତୀର୍ଥ ନାହିଁ ଏବଂ ଶିବରାତ୍ରି ତୁଲ୍ୟ ବ୍ରତ ନାହିଁ । ନିମ୍ନୋକ୍ତ ଶିବ ପ୍ରଣାମ ବିଶେଷ ପ୍ରସିଦ୍ଧି ଲାଭ କରିଅଛି ।

ନମଃ ଶିବାୟ ଶାନ୍ତାୟ କାରଣ ତ୍ରୟ ହେତବେ
ନିବେଦୟାମି ଚାତ୍ମାନଂ ଗତିସ୍ତ୍ୱଂ ପରମେଶ୍ୱର ।

ଯେ ଶିବମୟ ଶାନ୍ତ ମୂର୍ତ୍ତି, ସତ୍ତ୍ୱ ରଜଃ ଓ ତମଃ ଏହି ତିନି ଜଗତ୍ର କାରଣର କାରଣ ତାହାଙ୍କୁ ପ୍ରଣାମ । ହେ ପରମେଶ୍ୱର ତୁମରି ଚରଣରେ ଆତ୍ମ ସମର୍ପଣ କରୁଅଛି, ତୁମେ ହିଁ ମୋର ପରମ ଆଶ୍ରୟ ।

ଶିବରାତ୍ରି ବ୍ରତ ପାଳନ ଓ ଦର୍ଶନ ଇଚ୍ଛାରେ, ବହୁ ପ୍ରାଚୀନ କାଳରୁ ଅସଂଖ୍ୟ ଯାତ୍ରୀ କଟକଠାରୁ ଢେଙ୍କାନାଳଗଡ଼କୁ ଆସି ସେଠାରୁ କପିଳାସ ଅଭିମୁଖରେ ଯାତ୍ରା କରି ଆସୁଅଛନ୍ତି । ଯେତେବେଳେ ମଟର, ବସ ପ୍ରଭୃତିର ପ୍ରଚଳନ ନ ଥିଲା, ସେତେବେଳେ ସହସ୍ରାଧିକ ଯାତ୍ରୀ ପଦବ୍ରଜରେ କପିଳାସକୁ ଆସି ଦେଓଗାଁ (ଦେବଗ୍ରାମ)ଠାରେ ରାତିରେ ବିଶ୍ରାମ କରନ୍ତି । ସେଠାରୁ ପ୍ରାୟ ଦୁଇ ମାଇଲ ଅରଣ୍ୟ ପଥ ଅତିକ୍ରମ କରି ସେମାନେ ପର୍ବତର ପାଦ ଦେଶରେ ଉପସ୍ଥିତ ହୁଅନ୍ତି । ସେତେବେଳେ ପାବଚ୍ଛ ଶ୍ରେଣୀ ନ ଥିଲା । ଅତ୍ୟନ୍ତ ବନ୍ଧୁର ଗୁଳ୍ମ କଣ୍ଟକାକୀର୍ଣ୍ଣ ପାର୍ବତ୍ୟ ପଥ ଆରୋହଣ କରି ଯାତ୍ରୀମାନେ କ୍ଲାନ୍ତ ଅବସନ୍ନ ହୋଇ ପଡ଼ିଲେ ମଧ୍ୟ ପଥ ମଧ୍ୟରେ ସ୍ଥାନେ ସ୍ଥାନେ ବିରାଟ ଶିଳା ଉପରେ କିଛିକାଳ ଉପବେଶନ କରି ଅବଶେଷରେ ମନ୍ଦିର ନିକଟରେ ଉପସ୍ଥିତ ହୁଅନ୍ତି । ଏହି ଆରୋହଣ ପାଇଁ ଅନ୍ୟୂନ ଦୁଇ ଘଣ୍ଟା ଲାଗେ । ବୃଦ୍ଧ, ସ୍ତ୍ରୀ ଓ ବାଳକ ବାଳିକାମାନେ ମଧ୍ୟ ପର୍ବତାରୋହଣ କ୍ଲେଶ ପ୍ରତି ଭ୍ରୂକ୍ଷେପ ନ କରି ଶିବଦର୍ଶନା-ଭିଳାଷରେ ଊର୍ଦ୍ଧ୍ୱମୁଖ ହୋଇ ଗିରି ଆରୋହଣ କରନ୍ତି । ତୃଷାର୍ତ୍ତ ପଥିକମାନେ ଆରୋହଣ କାଳରେ ଦକ୍ଷିଣ ପାର୍ଶ୍ୱସ୍ଥ ଭୀମ ଲଙ୍ଗଳ ସିଆରର ଜଳପାନ କରି ତୃଷା ନିବାରଣ କରିଥା'ନ୍ତି । କଥାରେ ଅଛି—

ସାତ ପର୍ବତ ନଅ ଖୋଲ,
ତେବେ ଯାଇ ଦେଖିବ ଚନ୍ଦ୍ରଶେଖରଙ୍କ ଡୋଲ ।

କ୍ରମେ କ୍ରମେ ଉଚ୍ଚରୁ ଉଚ୍ଚତର ପଥ ଅତିକ୍ରମ କଲାବେଳେ ମଧ୍ୟେ ମଧ୍ୟେ ଗୋଟିଏ ଗୋଟିଏ ଅଳ୍ପ ସମତଳ ଅଂଶ ଦେଖାଯାଏ । ଏହା ଯାତ୍ରୀମାନଙ୍କର

ଶ୍ରମାପନୋଦନ ନିମିତ୍ତ ସତେ ଯେପରି ଭଗବତ୍ ନିର୍ଦ୍ଦିଷ୍ଟ ସ୍ଥଳୀ । ପଥ ଅତିକ୍ରମ କଲାବେଳେ ପୁରୁଷମାନଙ୍କର ବମ୍ ବମ୍ ଭୋଳାନାଥ ଓ ସ୍ତ୍ରୀମାନଙ୍କର ହୁଳହୁଳି ଧ୍ୱନିରେ ବନଭୂମି ପ୍ରକମ୍ପିତ ହୋଇ ଉଠେ । ଖ୍ରମଲଗଙ୍ଗଳ ସିଆର ଦେଇ ପ୍ରବାହିତ କପିଳାସର ସ୍ୱଚ୍ଛ ନିର୍ଝର ଜଳର କୁଳୁ କୁଳୁ ଧ୍ୱନି ଯାତ୍ରୀମାନଙ୍କର କର୍ଣ୍ଣରେ ମୃଦୁ ବଂଶୀ ଧ୍ୱନି ପରି ପ୍ରତୀତ ହୁଏ । ପଥର ଦୁଇ ପାର୍ଶ୍ୱରେ ନିଭୃତ ଶ୍ରେଣୀ ପର୍ବତ ଦୁଇଟି ବିରାଟ ପ୍ରାଚୀର ପରି ପ୍ରତୀତ ହୁଏ । ମଧ୍ୟବର୍ତ୍ତୀ ପଥଟି ସତେ ଯେପରି କୌଣସି ଅଜ୍ଞାତ ପ୍ରାକୃତିକ ଶିଳ୍ପୀ ଯାତ୍ରୀମାନଙ୍କ ପାଇଁ ନିର୍ମାଣ କରି ରଖିଦେଇଛି ।

ଅଧୁନା ଉକ୍ତ ବନ୍ଧୁର ପଥ ଆଉ ନାହିଁ । ତାହା ପରିବର୍ତ୍ତେ ନିମ୍ନ ଦେଶରୁ ମନ୍ଦିର ପର୍ଯ୍ୟନ୍ତ ପଥରରେ ସିମେଣ୍ଟ ଦ୍ୱାରା ପାବଚ୍ଛ ଶ୍ରେଣୀ ନିର୍ମିତ ହୋଇ ଯାଇ ଥିବାରୁ ଯାତ୍ରୀମାନଙ୍କର ଗମନାଗମନ ପାଇଁ ସୁଗମ ହୋଇଅଛି । ଉପରୁ ନଳ ଖଞ୍ଜା ହୋଇ ମଧ୍ୟେ ମଧ୍ୟେ ଗୋଟିଏ ଗୋଟିଏ କୁଣ୍ଡର ବ୍ୟବସ୍ଥା କରାଯାଇଥିଲେ ମଧ୍ୟ, ଦୁର୍ବୃତ୍ତ ଲୋକମାନେ ଏହି ନଳ ସବୁ ଭାଙ୍ଗି ଦେବାରୁ ଉଦ୍ୟୋକ୍ତାମାନଙ୍କର ଉଦ୍ଦେଶ୍ୟ ପଣ୍ଡ ହେଉଅଛି । ଦୁଇ ପାର୍ଶ୍ୱରେ ବନଭୂମିର ସୁଦୃଶ୍ୟ ପ୍ରକୃତି ଓ କଳନାଦିନୀ ଝରଣାର ମୃଦୁ ମଧୁର ଗତି, ତନ୍ମଧ୍ୟରେ ବନ୍ୟ ପଶୁପକ୍ଷୀମାନଙ୍କ ମଧୁର କଳରବ ପଥିକ ପ୍ରାଣରେ ଅପୂର୍ବ ଶାନ୍ତି ଓ ଆନନ୍ଦ ପ୍ରଦାନ କରିଥାଏ ।

ପର୍ବତ ଆରୋହଣ କରିବା ପାଇଁ ଗୋଟିଏ ସଡ଼କ ପଥ ମଧ୍ୟ ଅଛି । ଏହା କୁଟିଳ ସର୍ପାକୃତି ଗତିରେ ଯାଇଅଛି । ଏହା ଉପରେ ଗୃଲି ଗୃଲି ଯିବା ଅପେକ୍ଷାକୃତ ସହଜ ହେଲେ ମଧ୍ୟ ବହୁ ସମୟସାପେକ୍ଷ । ହାଣ୍ଡି, ସବାରି, ମଟର ପ୍ରଭୃତି ଯାନ ଏହି ପଥରେ ଯାଇ ସିଧା ସିଂହଦ୍ୱାର ସମ୍ମୁଖରେ ପହଞ୍ଚିପାରେ । ଏହି ରାସ୍ତା ଏବେ ପିଚୁ ରାସ୍ତାରେ ପରିଣତ ହୋଇ ଥିବାରୁ ଜିପ୍ ଓ ମଟର ଯାନ ପାଇଁ ଅଧିକ ସୁବିଧା ଜନକ ହୋଇଅଛି ।

ଅନେକ ଯାତ୍ରୀ ଚତୁର୍ଦ୍ଦଶୀର ପୂର୍ବ ରାତିରେ କପିଳାସ ପର୍ବତ ଉପରେ ଅବସ୍ଥାନ କରି ପ୍ରଭାତରେ ସ୍ନାନାଦି ନିତ୍ୟକର୍ମ ଶେଷ କରି ସକାଳ ପ୍ରାୟ ୭ ଘଣ୍ଟା ମଧ୍ୟରେ ଠାକୁରଙ୍କୁ ଦର୍ଶନ କରିଥା'ନ୍ତି । ଯେଉଁମାନେ ଚତୁର୍ଦ୍ଦଶୀ ଦିନ ଯାଆନ୍ତି ସେମାନେ ଦିନ ଦଶ ଘଣ୍ଟାରେ ଉପସ୍ଥିତ ହୋଇ ସ୍ନାନାଦି ସମାପନ କରି ଦର୍ଶନ କରିବା ବେଳକୁ ବହୁତ ଭିଡ଼ ହୁଏ । ମନ୍ଦିର ମଧ୍ୟକୁ ଯିବାର ସଙ୍କୀର୍ଣ୍ଣ ପଥରେ ବହୁ ଯାତ୍ରୀ ଏକ ସମୟରେ ପ୍ରବେଶ କରିବା ବିଶେଷ ଆୟାସସାଧ୍ୟ ହୋଇଥାଏ ।

*

ସରକାରଙ୍କ ପକ୍ଷରୁ ଦର୍ଶନର ସୁବିଧା ପାଇଁ ବ୍ୟବସ୍ଥା କରାଯାଏ । କେତେକ ବାଳଚର ଓ ସେବାସଂଘର ସ୍ୱେଚ୍ଛାସେବକମାନେ ମଧ୍ୟ ଏହି କାର୍ଯ୍ୟରେ ସହାୟତା କରିଥାନ୍ତି ।

ଠାକୁରଙ୍କ ଦର୍ଶନ ନ କଲେ ଯାତ୍ରୀମାନେ ସାଧାରଣତଃ କିଛି ଖାଦ୍ୟ ଗ୍ରହଣ କରନ୍ତି ନାହିଁ । ଏଣୁ ଯଥାସମ୍ଭବ ଶୀଘ୍ର ଦର୍ଶନ କରି ଠାକୁରଙ୍କଠାରେ କଦଳୀ, ନଡ଼ିଆ ପ୍ରଭୃତି ଭୋଗ ଲଗାଇ ପ୍ରସାଦ ସେବା କରନ୍ତି । ମନ୍ଦିରର ସେବକମାନେ ଅନ୍ନ, ଡାଲି ଓ ତରକାରି ପ୍ରଭୃତିର କେତେକ ବ୍ୟବସ୍ଥା କରନ୍ତି ଓ ଗୁଡ଼ିଆମାନେ ନାନା, ମିଷ୍ଟାନ୍ନ ବିକ୍ରୟ କରନ୍ତି । ଯାତ୍ରୀମାନେ ଦେଓଗାଁଠାରୁ କେତେକ ପରିମାଣ ଭୋଗ ଓ ଖାଦ୍ୟ ସାମଗ୍ରୀ ମଧ୍ୟ ସଂଗ୍ରହ କରି ଆଣିଥାନ୍ତି । ଅନ୍ୟଥା ମନ୍ଦିରରେ ଏସବୁ ସହଜଲଭ୍ୟ ହୁଏ ନାହିଁ ।

ସନ୍ଧ୍ୟାର ଅବ୍ୟବହିତ ପରେ ମନ୍ଦିର ଅଭ୍ୟନ୍ତର ଶଙ୍ଖ, ଘଣ୍ଟି, ଘଣ୍ଟା ଓ କାହାଳିଆଦି ବାଦ୍ୟରେ ନିନାଦିତ ହୋଇ ଉଠେ । ଏହା ସଙ୍ଗେ ସଙ୍ଗେ ସମଗ୍ର ମନ୍ଦିର ପ୍ରାଙ୍ଗଣ ଯାବତୀୟ ସମୁଜ୍ଜ୍ୱଳ ଦୀପାଲୋକ ଦ୍ୱାରା ଉଦ୍ଭାସିତ ହୋଇ ନୀଳ ଆକାଶ ମାର୍ଗରେ ସମୁଜ୍ଜ୍ୱଳ ତାରକାରାଶିବତ୍ ପ୍ରତୀୟମାନ ହୁଏ । ଯେ ଯେଉଁଠି ବସିଥାନ୍ତି ସେଠି ଘୃତ ଦୀପ ପ୍ରଜ୍ୱଳିତ କରି ଭଜନ, କୀର୍ତ୍ତନ, ଭାଗବତ ପାଠ ଇତ୍ୟାଦି ସ୍ୱ ସ୍ୱ ରୁଚି ଅନୁସାରେ କରିଥାନ୍ତି । ସମବେତ ନାରୀମାନଙ୍କ କଣ୍ଠର ହୁଳହୁଳି ଧ୍ୱନି ଓ ଭକ୍ତ କଣ୍ଠ ନିଃସୃତ ହରିବୋଲ, ଜୟ ଶମ୍ଭୁ ସଦାଶିବ ଧ୍ୱନିରେ ଗଗନ ମଣ୍ଡଳ ମୁଖରି ହୋଇଉଠେ । ଏହି ମନୋହର ଦୃଶ୍ୟ ନିତାନ୍ତ ନାସ୍ତିକ ପ୍ରାଣରେ ମଧ୍ୟ ଭକ୍ତିରସର ସଞ୍ଚାର କରିଥାଏ । ଏହି ଦୃଶ୍ୟ ପ୍ରାୟ ସମଗ୍ର ରାତି ଚାଲିଥାଏ ।

ଅର୍ଦ୍ଧରାତ୍ର ପରେ ଶ୍ରୀଚନ୍ଦ୍ରଶେଖରଙ୍କର 'ନାଗାଭରଣ' ବେଶ ଅନୁଷ୍ଠିତ ହୁଏ ଓ ମନ୍ଦିର ଊର୍ଦ୍ଧ୍ୱକୁ ମହାଦୀପ ଉଠେ । ଏହି ବେଶ ଢେଙ୍କାନାଳର ବିଶେଷତ୍ୱ । ଏହି ବେଶଟି ଅତି ଦର୍ଶନୀୟ । ଏହା ଦେଖିବା ପାଇଁ ଲୋକେ ଉତ୍କଣ୍ଠିତ ହୋଇ ବସିଥାନ୍ତି । ନିର୍ଦ୍ଦିଷ୍ଟ ସମୟ ଉପସ୍ଥିତ ହୁଅନ୍ତେ ସହସ୍ର ସହସ୍ର ନର ନାରୀ ମନ୍ଦିର ମଧ୍ୟକୁ ପ୍ରବେଶ କରିବାପାଇଁ ଧାବମାନ ହୁଅନ୍ତି । ଭାଗ୍ୟବାନ୍ ଲୋକେ ହିଁ ଏହି ବେଶ ଦେଖିବାକୁ କ୍ଷମ ହୋଇ ପାରନ୍ତି । ଅନ୍ୟ କେତେକ ନିରାଶ ହୋଇ ଫେରିବାର ଦେଖାଯାଏ । ନାଗାଭରଣ ବେଶର ବିଶେଷତ୍ୱ—

ପଞ୍ଚବକ୍ତ୍ର ମଣ୍ଡିତ ଉଷ୍ଣୀଷାକୃତ ଗୋଟିଏ ସ୍ୱର୍ଣ୍ଣନିର୍ମିତ କୋଷାଭରଣ ଶିବଲିଙ୍ଗ ଉପରେ ସ୍ଥାପନ କରି ତଦୁପରି ଅନେକ ସୁବର୍ଣ୍ଣ ନାଗର ବେଷ୍ଟନୀ ଏପରି ଭାବରେ ରଖାଯାଏ ଯେ ସମସ୍ତ ସର୍ପଫଣା ପଞ୍ଚାନନଙ୍କୁ ବେଷ୍ଟନ କରି ରହିଥାଏ । ଏହି ବେଶ ଆରମ୍ଭ ହେବା ପୂର୍ବରୁ ଗୋଟିଏ ସ୍ୱର୍ଣ୍ଣ ଖଚିତ ବହୁମୂଲ୍ୟ ବନାରସୀ ପରିଚ୍ଛଦ ଦ୍ୱାରା ପ୍ରଥମେ ଲିଙ୍ଗ ଦେହକୁ ଓ ଶକ୍ତିକୁ ଆଚ୍ଛାଦିତ କରି ତାହା ଉପରେ ଉକ୍ତ ବେଶ କରାଯାଏ । ଅନନ୍ତର ପଞ୍ଚବକ୍ତ୍ର ଉପରେ ଶିବପ୍ରିୟ ସ୍ୱର୍ଣ୍ଣ ନିର୍ମିତ ଗଇଣ୍ଠ, ବେଲପତ୍ରୀ, ଚମ୍ପକ ଓ ଧୂସ୍ତୁର ପୁଷ୍ପମାନ ଖଚିତ କରାଯାଏ । ଶିବଙ୍କ ଗଳାରେ ୧୦୮ ଦେଖା ମୁଣ୍ଡମାଳ ଦିଆଯାଏ ଏବଂ ପାର୍ବତୀଙ୍କ (ସ୍ୱତନ୍ତ୍ର ଗୃହରେ ପୂଜିତା) ଗଳାରେ ୧୦୭ ଶିବ ମସ୍ତକ ମାଳା ଅର୍ପିତ ହୁଏ । ଆଉ ଏକ ମସ୍ତକ ମିଳନ ବେଳେ ବ୍ୟବହୃତ ହୁଏ । ଏହି ସ୍ୱର୍ଣ୍ଣ ନିର୍ମିତ ଆଭରଣମାନ ରାଜଦତ୍ତ । ଏହା ଦେବଗ୍ରାମ (ଦେଓଗାଁ) ଠାରେ ସୁରକ୍ଷିତ ହୋଇ ରହି ଆସୁଥିଲା । ଗତ କେତେବର୍ଷ ତଳେ ଏହି ବହୁମୂଲ୍ୟ ଆଭରଣ ଚୋରି ହୋଇ ଯାଇଅଛି—ଏହା ଅତ୍ୟନ୍ତ ପରିତାପର ବିଷୟ ।

'ନାଗାଭରଣ' ବେଶ ପରେ ଠାକୁରଙ୍କର ଯୋଗୀ ବେଶ ହୁଏ । ଏହି ବେଶ ସମୟରେ ଢେଙ୍କାନାଳର ସିମିଳିଆ ପ୍ରଭୃତି ଗ୍ରାମମାନଙ୍କର ଯୋଗୀମାନେ ଠାକୁରଙ୍କର ସେବା ନିଯୋଗର ଅଧିକାରୀ । ସେମାନେ ରାତିରେ ମନ୍ଦିର ଅଭ୍ୟନ୍ତରରେ ଉପସ୍ଥିତ ଥାଇ ଯାତ୍ରୀମାନଙ୍କର ପ୍ରଦତ୍ତ ଅର୍ଥ ଗ୍ରହଣ କରିଥା'ନ୍ତି । ଏହି ଯୋଗୀମାନେ କେନ୍ଦରା ବଜାଇ ଗୀତା, ଟୀକା ଗୋବିନ୍ଦଚନ୍ଦ୍ର ଓ ଅନ୍ୟାନ୍ୟ ଅନେକ ଭଜନ, ସଙ୍ଗୀତ ଓ ପୁରାଣର ଅଂଶମାନ ପାଠ କରି ସାଧାରଣତଃ ଗ୍ରାମ ଓ ସହରରେ ପରିଭ୍ରମଣ କରି ଭିକ୍ଷା ଗ୍ରହଣ କରିଥାନ୍ତି । ଓଡ଼ିଶାରେ ବହୁ କାଳରୁ ପ୍ରଚଳିତ ନାଥଯୋଗୀ ସମ୍ପ୍ରଦାୟର ପରମ୍ପରା ଟୀକା ଗୋବିନ୍ଦଚନ୍ଦ୍ରରେ ପ୍ରକାଶିତ । ନାଥ ଯୋଗୀ ସମ୍ପ୍ରଦାୟ ଭୁକ୍ତ ଗୋରଖନାଥ, ମଚ୍ଛିନ୍ଦ୍ର ନାଥଙ୍କର ଦୀକ୍ଷା ଓଡ଼ିଆମାନଙ୍କ ଉପରେ ବିଶେଷ ପ୍ରଭାବ ପକାଇଥିଲା । ସେମାନେ ସିଦ୍ଧ ଯୋଗୀ ଥିଲେ । ଏହି ସମ୍ପ୍ରଦାୟର ଜନୈକ ଯୋଗୀ କପିଳାସରେ ରହି ଶିବ ଉପାସନା କରିଥିଲେ । ନାଥଯୋଗୀ ସମ୍ପ୍ରଦାୟର ପ୍ରଭାବ ଓଡ଼ିଶାର ପଞ୍ଚସଖା ଧର୍ମରେ ପ୍ରତିଫଳିତ ହୋଇଥିବାର ପ୍ରମାଣ ମିଳିଅଛି । ଏବର କେନ୍ଦରା ବଜା ଯୋଗୀମାନଙ୍କର ଏସବୁ ଶିକ୍ଷା ଦୀକ୍ଷା କିଛି ନାହିଁ । ଏମାନେ କେବଳ ଭିକ୍ଷାଟନକୁ ବ୍ୟବସାୟ ରୂପେ ଧରି ନେଇଛନ୍ତି । ଏହିଭଳି

ଗୋଟିଏ ସମ୍ପ୍ରଦାୟ ଓଡ଼ିଶାର ଚକୁଳିଆ ପଣ୍ଡା । ବାଲ୍ୟକାଳରୁ ହିଁ ଏମାନେ ଭିକ୍ଷାକୁ ଉପ-ଜୀବିକା ରୂପେ ଗ୍ରହଣ କରି ଗ୍ରାମେ ଗ୍ରାମେ ବୁଲି ଗୃହଣି ଗୀତ ଗାନ କରିଥାନ୍ତି—

"ବଳି ଦାତା, କର୍ଣ୍ଣଦାତା ଷଡ଼ ଚକ୍ରବର୍ତ୍ତୀ
ଏମାନେ ଚାଲିଗଲେ ରହିଅଛି କୀର୍ତ୍ତି ।" ଇତ୍ୟାଦି ।

ଜାଗର ଯାତ୍ରାଦିନ ନିଶୀଥରେ ଶିବଙ୍କ ସମ୍ମୁଖରେ ହରିହର ଭେଟ ହୁଏ । ଏହି ଭେଟ ପାଇଁ ଦେବ ମନ୍ଦିରରୁ ଶ୍ରୀ ମଦନ ମୋହନ ଜୀ ବିଜେ ହୋଇଥା'ନ୍ତି । ଏହି ଭେଟ ସମୟରେ ଉଭୟ ଦେବତାଙ୍କର ପୂଜା ନୀରାଜନା ପ୍ରଭୃତି ଅନୁଷ୍ଠିତ ହୋଇଥାଏ । ଧର୍ମ କ୍ଷେତ୍ରରେ ଏହି ହରିହର ଭେଟ ଶୈବ ଓ ବୈଷ୍ଣବ ଧର୍ମ ସମନ୍ୱୟର ଏକ ସୁମଧୁର ନିଦର୍ଶନ ।

ନାଗାଭରଣ ବେଶ, ଯୋଗୀ ବେଶ, ହରିହର ଭେଟ ପ୍ରଭୃତି ନୀତିଗୁଡ଼ିକ ସମାପନ କରୁ କରୁ ସମଗ୍ର ରାତ୍ରି ଶେଷ ହୋଇଯାଏ । ବ୍ରତ ପାଇଁ ଉଜାଗର ଥିବା ଯାତ୍ରୀଗଣ ଏହିସବୁ ଚିତ୍ତାକର୍ଷକ ଓ ଭାବୋଦ୍ଦୀପକ ଦୃଶ୍ୟାବଳି ସନ୍ଦର୍ଶନ କରି ଆତ୍ମବିସ୍ମୃତ ହୋଇଯା'ନ୍ତି ।

ଶେଷ ପ୍ରହରଟି ଯୋଗିମାନଙ୍କ ପାଇଁ ଉଦ୍ଦିଷ୍ଟ । ଏହି ଯୋଗୀ ବେଶର ଅଧ୍ୟକ୍ଷତା କରିବା ପାଇଁ ବିଭିନ୍ନ ସ୍ଥାନରୁ ପ୍ରତିନିଧିମାନେ ବରଣ ହୋଇ ଆସିଥାନ୍ତି । ସେମାନଙ୍କୁ ମନ୍ଦିରର ଖରସୁଧା ଯଥାବିଧି ବରଣ କରି ପୂର୍ବଦିନଠାରୁ ମନ୍ଦିରରେ ପ୍ରସାଦ, ପୁଷ୍ପ ଚନ୍ଦନ ମାଲ୍ୟାଦି ଦେଇ ଅର୍ଚ୍ଚନା କରିଥା'ନ୍ତି । ନାଗାଭରଣ ବେଶ ଓ ହରିହର ଭେଟ ପରେ କିୟତ୍ କାଳ ପାଇଁ ମହାପ୍ରଭୁ ଯୋଗ ନିଦ୍ରାରେ ସମାସୀନ ହେଲେ ଅଭ୍ୟନ୍ତରରେ ଏହି ଯୋଗୀ ପ୍ରତିନିଧିମାନେ ସେବାରେ ନିଯୁକ୍ତ ରହନ୍ତି । ସେଠାକୁ ଚିନ୍ତାପଣ୍ଡା ବା ଅନ୍ୟ କେହି ପ୍ରବେଶ କରି ପାରନ୍ତି ନାହିଁ । ଉଷାକାଳରେ ଯୋଗୀ ମହନ୍ତମାନେ ଖାରକାହାଳି, ଦକ୍ଷିଣାବର୍ତ୍ତ ଶଙ୍ଖ ଓ ଘଣ୍ଟାଦି ବଜାଇ ପ୍ରଭୁଙ୍କର ନିଦ୍ରାଭଙ୍ଗ କରନ୍ତି ଓ ତା'ପରେ ସ୍ନାନ ମାର୍ଜନାଦି ଯଥାରୀତି ସମାହିତ ହୁଏ । ଏହି ଯୋଗୀମାନେ ଆଳିଭୁମା, ସିମିଳିଆ, ଯୋଗୀ ଡିହ ଓ ଆମ୍ବ ପଳାଶ ଗ୍ରାମମାନଙ୍କରେ ବାସ କରନ୍ତି ।

କପିଳାସର ଜାଗର ଯାତ୍ରା ପର ଦିନ ଯାତ୍ରୀମାନେ ପ୍ରଭାତରୁ ସ୍ନାନାଦି ଶେଷ କରି କେହି ବା ସ୍ନାନାଦି ନ କରି ନିଜ ନିଜ ପଥରେ ପ୍ରତ୍ୟାବର୍ତ୍ତନ କରନ୍ତି ।

ଫେରିବା ବେଳେ ବାଟରୁ ନାନା ପ୍ରକାର ଚେର, ମୂଳ (ଔଷଧି ପାଇଁ) ଏବଂ କପିଳାସ ବାଂଶ ବାଡ଼ି ( କପିଳାସିଆ ଠେଙ୍ଗା ) ଧରି ଆସନ୍ତି । ସମସ୍ତେ ଦେବ ଗ୍ରାମଠାରେ ଠୁଳ ହୁଅନ୍ତି । ଏହିଠାରେ ପ୍ରାୟ ୮।୧୦ ଦିନ ଧରି ବିରାଟ ଜନ-ସମାବେଶ ହୁଏ । ନିକଟବର୍ତ୍ତୀ ଅଧିବାସିମାନେ ବେପାରିମାନଙ୍କଠାରୁ ନାନା ପ୍ରକାର ଦ୍ରବ୍ୟ କିଣନ୍ତି । ଏଥି ମଧ୍ୟରେ ଢେଙ୍କାନାଳର ଗଂଧିଆ ପ୍ରସିଦ୍ଧ ପଥର ଓ କଂସା ପିତଳ ବାସନ ପ୍ରଧାନ । ଦେଓଗାଁ ନିକଟବର୍ତ୍ତୀ ଗ୍ରାମମାନଙ୍କରୁ କାଠ ଓ ସିଂହିର ଅନେକ ଜିନିଷ ପାତ୍ର, ଡମମାନଙ୍କ ତିଆରି ବାଉଁଶର ବୋଝ, ଡାଲା, ପେଡ଼ି ପ୍ରଭୃତି ଜିନିଷ ଯାତ୍ରୀମାନେ କିଣି ନିଅନ୍ତି । ଅଧୁନା ନିରନ୍ତର ବସ୍ ଚାଲୁ ଥିବାରୁ ଦୂରରୁ ଆସୁଥିବା ଅଧିକ ସଂଖ୍ୟକ ଯାତ୍ରୀ ବିଦାୟ ନେଇ ଚାଲି ଯାଆନ୍ତି । ପରିବହନ ବିଭାଗ, ସ୍ୱାସ୍ଥ୍ୟ ବିଭାଗ ଓ ଅରଣ୍ୟ ବିଭାଗ ପ୍ରଭୃତିରୁ ଦେବଗ୍ରାମର ଯାତ୍ରା ପାଇଁ ବିଶେଷ ସଚେତନ ବ୍ୟବସ୍ଥା କରାଯାଇଥାଏ ।

କପିଳାସରେ ଜାଗରଯାତ୍ରା ଭିନ୍ନ ଶ୍ରୀ ଚନ୍ଦ୍ରଶେଖରଙ୍କର ଆହୁରି ଅନେକ ପର୍ବପର୍ବାଣୀ ମଧ୍ୟ ଅଛି । ଯଥା—ନବାଂକ ବେଢ଼ା ମକର ସଂକ୍ରାନ୍ତି, ଦୋଳ, ଅଶୋକାଷ୍ଟମୀ, ଦମନକ ଚତୁର୍ଦ୍ଦଶୀ, ମେଷ ପଣା, ବନଜାଗ, ଚନ୍ଦନ ପର୍ବ, ଦେବ ବିବାହ, ଶତାଳଗି, ଗହ୍ମା ପୂର୍ଣ୍ଣିମା, ଜନ୍ମାଷ୍ଟମୀ, ସପ୍ତପୁରି ଅମାବାସ୍ୟା, ହରି-ତାଳିକା, ଅଙ୍କ ପର୍ବ, ଦେବାଭିଷେକ, ଭାଗବତ ବଡ଼ା, ଚୈତ୍ରଣା ସଂକ୍ରାନ୍ତି, କୁମାର ପୂର୍ଣ୍ଣିମା, ଧନୁ ସଂକ୍ରାନ୍ତି ଇତ୍ୟାଦି ।

ଏହି ପର୍ବଗୁଡ଼ିକ ୧୨ ମାସ କ୍ରମ ଅନୁସାରେ ଯଥାରୀତି ଅନୁଷ୍ଠିତ ହୋଇଥାଏ । ଠାକୁରଙ୍କ ନିତ୍ୟନୈମିତ୍ତିକ ଭୋଗ ଅପେକ୍ଷା ଏସବୁ ପର୍ବ ପାଳିତ ହେବା ପାଇଁ ବାର୍ଷିକ ବଜେଟରେ ସ୍ୱତନ୍ତ୍ର ବ୍ୟବସ୍ଥା ରହିଅଛି ।

ଶିବରାତ୍ରି ଉତ୍ସବରେ ପୁରୀ ଗଜପତି ମହାରାଜାଙ୍କଠାରୁ କେତକୀ ଫୁଲ ଆସି ମହାଦେବଙ୍କଠାରେ ଲାଗି ହେବାର ବ୍ୟବସ୍ଥା ଅଛି । ମାଦଳା ପାଞ୍ଜିରେ ଏହାର ଉଲ୍ଲେଖ ଅଛି ।

ଜନ୍ମାଷ୍ଟମୀ, ସପ୍ତପୁରି ଅମାବାସ୍ୟା ପର୍ବପାଇଁ ମଧୁପୁର ରାଜାଙ୍କଠାରୁ କେତେକ ଉପକରଣ ଆସୁଛି ।

ମକର ଅଭିଷେକ ପର୍ବରେ ତାଳଚେର ରାଜାଙ୍କଠାରୁ କେତେକ ପୂଜା ସାମଗ୍ରୀ ଆସୁଅଛି ।

ଦେଓଗାଁ ବଳଦେବଙ୍କ ଦେଉଳର ସମ୍ମୁଖସ୍ଥ ଅଷ୍ଟସ୍ତମ୍ଭ-ବିଶିଷ୍ଟ ଶିଳା ମଣ୍ଡପରେ ଚନ୍ଦ୍ରଶେଖର ଦେବଙ୍କର ବିବାହ ଉତ୍ସବ ଅନୁଷ୍ଠିତ ହୁଏ । ଏଥିପାଇଁ ଏହି ମଣ୍ଡପ ବିଭାମଣ୍ଡପ ନାମରେ ପରିଚିତ । ଜ୍ୟେଷ୍ଠ ଶୁକ୍ଳ ପଞ୍ଚମୀ ତିଥିରେ ଏହି ବିବାହ ଉତ୍ସବ ଅନୁଷ୍ଠିତ ହୋଇଥାଏ । ଏହି ସ୍ଥାନର କିଛି ଦୂରରେ ଈଶାନ୍ୟ କୋଣରୁ ଗୋଟିଏ କଦମ୍ବ ମୂଳରେ ଏକ ଶିବଲିଙ୍ଗ ମୂର୍ତ୍ତି ବିଦ୍ୟମାନ । ଏହାର ନାମ କଦମ୍ବ ବେଢ଼ା । ଏଠାରେ ଆବଶ୍ୟକ ହେଲେ ଲୋକମାନେ ଶପଥ କରନ୍ତି— ଏପରି ଶପଥ ଚନ୍ଦ୍ରଶେଖରଙ୍କ ନିକଟରେ ଶପଥ କରିବା ସଙ୍ଗେ ସମାନ ବୋଲି ଲୋକମାନଙ୍କର ବିଶ୍ୱାସ । ପୂର୍ବେ ଦେବତାଙ୍କ ନିକଟରେ ଲୋକେ ଶପଥ କରି ସତ୍ୟ ପ୍ରକାଶ କରୁଥିଲେ ଏବଂ ସତ୍ୟ ଭଙ୍ଗ କଲେ ତାର ଫଳ ମଧ ଭୋଗିଥିବାର ପ୍ରମାଣ ଅଛି । ଏବେ ସେପରି ଶପଥ ପ୍ରତି କ୍ରମେ ଅନାସ୍ଥା ଆସି ଗଲାଣି । କଚେରୀରେ ତମ୍ବା ତୁଳସୀ ଧରି ନିୟମ କରିବା ଗୋଟିଏ ପ୍ରଥା ମାତ୍ର ହୋଇ ରହିଛି । ଏପରି ଶପଥ କରି ସାକ୍ଷୀମାନେ ବହୁ ମିଥ୍ୟା କଥା ଅବାଧରେ କହି ଯାଉଛନ୍ତି ।

ଦଶହରା ଦିନ କପିଳାସରୁ ଦୁର୍ଗାଦେବୀଙ୍କର ଚଳନ୍ତି ପ୍ରତିମା ଦେବଗ୍ରାମର ଦଶହରା ପଡ଼ିଆକୁ ଯାତ୍ରା କରନ୍ତି । ମହାଷ୍ଟମୀ ଦିନ ପୂର୍ବରେ ବିମଳାଙ୍କ ସମ୍ମୁଖରେ ବଳିଦାନ ପରି କପିଳାସରେ ଦୁର୍ଗାଙ୍କ ନିକଟରେ ବଳିଦାନ ଥିବା କଥା ଏଥି ପୂର୍ବରୁ ଉଲ୍ଲେଖ କରାଯାଇଅଛି । ଏହି ବଳି ଚନ୍ଦ୍ରଶେଖରଙ୍କ ପାଟ ଅଗଣାରେ ବା ବେଢ଼ା ମନ୍ଦିରରେ ପ୍ରବେଶ କରିବା ନିଷିଦ୍ଧ । ତେଣୁ ସମ୍ଭବତଃ ଦୁର୍ଗା ମନ୍ଦିର ଦେଉଳ ବେଢ଼ାରୁ ପୃଥକ୍‌ଭାବେ ରଖା ଯାଇଅଛି । (ଢେଙ୍କାନାଳ ଇତିହାସ ରାମଚନ୍ଦ୍ର ନନ୍ଦ )

ଶ୍ରୀ ଚନ୍ଦ୍ରଶେଖରଙ୍କ ମନ୍ଦିରର ବେଢ଼ା ବାହାରେ ଏବଂ କିଛି ନିମ୍ନରେ ଗୃହଚଣ୍ଡୀ ଦେବୀଙ୍କ ଆସ୍ଥାନ । ସେଠାରେ ଆଶ୍ୱିନ ମାସ ଷୋଳ ପୂଜାରେ ମାଗୁର ଓ ଚେଙ୍ଗ ମାଛ ପୋଡ଼ା ଭୋଗ ଦିଆଯାଇ ଥାଏ ।

ବ୍ରହ୍ମଚାରୀ ମଠ ଭିନ୍ନ ଆହୁରି କେତେକ ମଠ କପିଳାସ ଶିବାଳୟରେ ପରିଦୃଷ୍ଟ ହୁଏ । ଅନେକ ସାଧୁ ବ୍ରହ୍ମଚାରୀଙ୍କର ସମାଧି ମଧ ଏହିଠାରେ ଦେଖାଯାଏ । ବହୁ ପ୍ରାଚୀନ କାଳରୁ ସାଧୁସନ୍ନ୍ୟାସୀମାନେ ଏଠାରେ ଆଶ୍ରମ ପ୍ରତିଷ୍ଠା କରିଥିବା ସୁନିଶ୍ଚିତ । ଏହାର ପ୍ରାକୃତିକ ପରିବେଶ ଏବଂ ସ୍ୱାସ୍ଥ୍ୟପ୍ରଦ

ନିର୍ଝର ଜଳ ଏବଂ ସବୋପରି ବନନିର୍ଜନତା ମୁନି ଋଷିମାନଙ୍କ ପକ୍ଷରେ ଆକର୍ଷଣୀୟ ହୋଇଥିଲା ।

ବନନିର୍ଜନତା କାହିଁ ଥିଲା ବେଶ ମୋହନ
ଯେ ବେଶେ ମୋହିଲା ଋଷି ମୁନି ନୟନ ।

ଏହି ବନନିର୍ଜନତା ମଧ୍ୟରେ ଶବର ଜାତୀୟ ସେବକମାନେ ଶମ୍ଭୁଙ୍କର ସ୍ୱୟଂଭୂତ୍ୱର ପ୍ରମାଣ ପାଇଁ ଏକାନ୍ତ ଭକ୍ତି ସହକାରେ ସେବା କରୁଥିଲେ—ଲୋକଲୋଚନ ଅଗୋଚରରେ । ମାତ୍ର ମନୁଷ୍ୟ ଯେତେବେଳେ ଏଠାରେ ପଦକ୍ଷେପ କରି ମନ୍ଦିରାଦି ନିର୍ମାଣ ପୂର୍ବକ କୋଳାହଳ ସୃଷ୍ଟି କଲା—କ୍ରମେ ତାହାର ବନନିର୍ଜନତା ବିଲୁପ୍ତ ହୋଇଯିବାରୁ ମୁନିମାନେ ଅନ୍ତର୍ହିତ ହୋଇ ଗଲେ । ବର୍ତ୍ତମାନ ଶୂନ୍ୟ-ଆଶ୍ରମମାନ ପରିଲକ୍ଷିତ ହୋଇଥାଏ । ସେଥିରେ ତଥାକଥିତ କେତେକ ସାଧୁ-ବେଶଧାରୀ ବ୍ୟକ୍ତି କେବଳ ଭେକ ଓ ଭୋକର ସଂକେତ ଦେଖାଇଥାଆନ୍ତି ।

ଢେଙ୍କାନାଳର ସପ୍ତଶଯ୍ୟା, ସିଂହାରୀଖୋଲ, ଗଣେଶ ଖୋଲ, କଟକ ଜିଲ୍ଲାର ଚଣ୍ଡୀଖୋଲ, ମହା ବିନାୟକ, ପାଲଲହଡ଼ାର ମାଳୀଗିରି ପ୍ରଭୃତି ଏହିପରି ମୁନିଜନ ସେବିତ ପରମ ରମଣୀୟ ପବିତ୍ର ଧାମ ଥିଲା । ଏବେ ସେ ସବୁ ନିରବଧି ଜନସମାଗମ ଦ୍ୱାରା ମୁଖରି ହୋଇ ଯାଇ ତପଃସାଧନର ବିରୁଦ୍ଧାଚରଣହିଁ କରୁଅଛି । ବେଳେ ବେଳେ ଦସ୍ୟୁ ଓ ଚୋରମାନେ ତଥା ଦୁର୍ବୃତ୍ତ ସେବକ-ମାନେ ଦାଅଁକୁ ଖାଇ ଖଣ୍ଡୁଲ ଖାଇ ଯାଉଛନ୍ତି ।

ଢେଙ୍କାନାଳର ସପ୍ତଶଯ୍ୟା ଓ ସିଂହାରୀ ଖୋଲ ଏହିପରି ଗୋଟିଏ ଗୋଟିଏ ପରମ ରମଣୀୟ ସ୍ଥାନ । ସିଂହାରୀଖୋଲ କରମୂଳ ଦୁର୍ଗର ଅନ୍ତର୍ଗତ ଥିଲା । ରାଜାଙ୍କର କୌଣସି ସିଂହାରୀ ନାମରେ ପର୍ବତଟି ନାମିତ । ଏଠାରେ ଗିରି ନିର୍ଝର ଶିର ପ୍ରବାହମାନ । ବନ୍ୟବୃକ୍ଷ ରାଜି ଭିନ୍ନ ଭିନ୍ନ ବହୁ ପରିମାଣ କଦଳୀ, ପଣସ, ଲେମ୍ବୁ ପ୍ରଭୃତି ଫଳ ବୃକ୍ଷମାନ ରୋପିତ ହୋଇଅଛି । ଏଠାରେ ଜନୈକ ସାଧୁଙ୍କର ସମାଧି ଭିନ୍ନ ଅନ୍ୟ କିଛି ନାହିଁ । ମାତ୍ର ସପ୍ତଶଯ୍ୟାରେ ଶ୍ରୀରାମଚନ୍ଦ୍ରଙ୍କ ମନ୍ଦିର ନିର୍ମିତ ହେବା ପରେ ଏହା ଶିବକ୍ଷେତ୍ର କପିଳାସ ପରି, ଏକ ରାମ କ୍ଷେତ୍ରରେ ପରିଣତ ହୋଇଗଲା । ଗତ ଶତାବ୍ଦୀରେ ଏଠାରେ କେତେକ ସାଧୁ ରହି ନିର୍ଜନ ବନରେ ତପଃ ସାଧନ କରୁଥିଲେ । ଏହା ସୁବିଖ୍ୟାତ

ସପ୍ତର୍ଷି ନକ୍ଷେବଛ ଧାମ ଥିଲା ବୋଲି କୁହା ଯାଉଅଛି । ଏ ପ୍ରସଙ୍ଗରେ ଅଧିକ ଆଲୋଚନା ଅବାନ୍ତର ବୋଧ ହୋଇପାରେ ।

କପିଳାସ ଶିଖରେଶ୍ୱର ମନ୍ଦିରରୁ କିଛିଦୂର ଆରୋହଣ କଲେ ବଳରାମ ଦାସ ମଠ ଏବଂ ଅବତରଣ କଲେ ବାସୁଦାସ ମଠ ପରିଦୃଷ୍ଟ ହୁଏ । ଏହି ବଳରାମ ଦାସ କିଏ ଏବଂ କେବେ ସେ ଏହି ନିର୍ଜନ ବନରେ ମଠ ସ୍ଥାପନ କରିଥିଲେ ତାହାର ପ୍ରମାଣ ନାହିଁ । ସେ ସନ୍ୟାସୀ ଥିଲେ ଏବଂ ଚନ୍ଦ୍ରଶେଖରଙ୍କ ପ୍ରସାଦରେ ହିଁ ଜୀବିକାବଲମ୍ବନ କରୁଥିଲେ । ବାସୁଦାସ ମଠ ଚୂତ ଚମ୍ପକ କେତକୀଅଶୋକ ଗୁବାକ କୋବିଦାର ଜମ୍ବୁ, ପନସ, କଦଳୀ ପ୍ରଭୃତି ବୃକ୍ଷ ସମାକୀର୍ଣ୍ଣ ମନୋରମ ସ୍ଥାନ । ଏଠାରେ ଗୋଟିଏ ଜଳକୁଣ୍ଡ ଅଛି ଏବଂ କେତେକ ଗୃହ ନିର୍ମିତ ହୋଇଅଛି । ଏଠାରେ ସାଧୁମାନେ ପର୍ଯ୍ୟଟନ କରି ଭିକ୍ଷାଲବ୍ଧ ଅନ୍ନରେ ଜୀବିକା ନିର୍ବାହ କରନ୍ତି । ବାସୁଦେବ ଦାସ ଜନୈକ ଗୁଜୁରାଟୀ ସନ୍ନ୍ୟାସୀ ଥିବାର ଜଣା ଯାଇଅଛି । ତାଙ୍କର ଶିଷ୍ୟମାନେ ଓଡ଼ିଆ ।

ବାସୁଦାସ ମଠରେ କିଛିବାଟ ଦୂର ଦକ୍ଷିଣ ପଶ୍ଚିମରେ ପାଦପଦ୍ମ ଗୁମ୍ଫା । ସେଠାରେ ୪ଟି କ୍ଷୁଦ୍ର ବୃହତ୍ ପଦଚିହ୍ନ ଶିଳା ଦେହରେ ଅଙ୍କିତ ଅଛି । ଏହି ପଦଚିହ୍ନ ଉତ୍କୀର୍ଣ୍ଣ ହୋଇଥିବା ପରି ଜଣାଯାଏ ନାହିଁ । ଗୁରୁପଦ ଭରରେ କଠିନ ଶିଳାଦେହ ଲାଞ୍ଛିତ ହୋଇଥିଲା ପରି ପ୍ରତୀୟମାନ ହୁଏ । କିମ୍ବଦନ୍ତୀରୁ ଜଣାଯାଏ ଯେ, ଏଠାରେ କୌଣସି ଏକ ଯୋଗୀବର ଏବଂ ତାଙ୍କ ଶିଷ୍ୟ ଏକ ସମୟରେ ଦଣ୍ଡାୟମାନ ରହି କଠିନ ଯୋଗଚର୍ଯ୍ୟା କରିଥିଲେ । ବହୁକାଳ ଯାବତ୍ ତାଙ୍କର ପାଦ ଚାପରେ ଏହି ସ୍ଥାନ ଏପରି ଲାଞ୍ଛିତ ହୋଇଅଛି ।

ଏତଦ୍‌ବ୍ୟତୀତ ଶ୍ରୀଚନ୍ଦ୍ରଶେଖରଙ୍କ ମନ୍ଦିରର ଊର୍ଦ୍ଧ୍ୱ ଦେଶକୁ ଶିଳାବନ୍ଧୁର କଣ୍ଟକାକୀର୍ଣ୍ଣ ପଥରେ ଗମନ କଲେ ସୀତା ଏନୁଡ଼ିଶାଳ ନାମକ ଗୋଟିଏ ଗୁମ୍ଫା ପରିଦୃଷ୍ଟ ହୁଏ । ଏହି ଗୁମ୍ଫାଟିର ନାମ କପୋଳକଳ୍ପିତ । ସୀତା ଦେବୀଙ୍କ ସୂତିକା ଗୃହ ଓ ଯମଜ ସୁତ ପ୍ରସବର ଅନୁମେୟ କରାଯାଇଛି । ପାର୍ଶ୍ୱ ଦେଶରେ ବାଲ୍ମୀକିଙ୍କର ପ୍ରସ୍ତର ମୂର୍ତ୍ତି ସ୍ଥାପିତ । କାହିଁ ବାଲ୍ମୀକି ମୁନିଙ୍କ ତମସା ତୀରବର୍ତ୍ତୀ ଆଶ୍ରମ—କାହିଁ କପିଳାସର ଏହି ଅଭୁଲା ପର୍ବତ ଗୁମ୍ଫା ! ସରଳ ବିଶ୍ୱାସୀ ନରନାରୀମାନଙ୍କୁ ଏହି ଆଶ୍ରମର କାହାଣୀ ପାଉଁଶ ଦେଇ ଧନ୍ଦାପର୍ଶୀମାନେ କିଛି ଅର୍ଥ ଉପାର୍ଜନ କରିଥାନ୍ତି ।

ଏହି ସୀତା ଏନୁଡ଼ଶାଳର ଊର୍ଦ୍ଧ୍ୱ ଦେଶକୁ ଗମନ କଲେ କପିଳାସର ଊର୍ଦ୍ଧ୍ୱଦେଶ ଦେଖାଯାଏ । ଏହା ଏକ ବିସ୍ତୀର୍ଣ୍ଣ ଅଧିତ୍ୟକା । ଏହା ଦେବସଭା ନାମରେ କଥିତ । ଏଠାରୁ କଟକ ନଗରୀ ଓ ମହାନଦୀ ଦେଖାଯାଏ ।

ସୀତା ଏନୁଡ଼ଶାଳର କିଞ୍ଚିତ୍ ନିମ୍ନ ଦେଶକୁ ଅବତରଣ କଲେ 'କେନ୍ଦୁପାଣିଆ' ଗୁମ୍ଫା ଦେଖାଯାଏ । ଏହି ଏକ ବିରାଟ ଶିଳାର ଅଭ୍ୟନ୍ତର । ଏହା ମଧ୍ୟରେ ପ୍ରବେଶ କରିବାକୁ କେହି ସାହସ କରି ପାରନ୍ତି ନାହିଁ । ସେଥିରେ ବହୁ ପ୍ରକାଣ୍ଡ ସର୍ପ ଥିବାର ଅନୁମିତ ହୁଏ । କପିଳାସରେ ବୋଡ଼ା, ଅଜଗର ପ୍ରଭୃତି ପ୍ରକାଣ୍ଡ ସର୍ପମାନ ବେଳେ ବେଳେ ଦୃଷ୍ଟ ହୋଇଥାନ୍ତି । ଏହି ସ୍ଥାନଟିରେ ଅନେକଗୁଡ଼ିଏ ମନୁଷ୍ୟ ରୋପିତ ବୃକ୍ଷ ଅଦ୍ୟାବଧି ରହିଅଛି । ଏଠାରେ ପୂର୍ବେ କେହି ସାଧୁ ଯୋଗସାଧନ କରିଥିଲେ । ପରେ ସେ ସ୍ଥାନ ପରିତ୍ୟକ୍ତ ହୋଇଅଛି । ସେଠାରେ ଅଦ୍ୟାବଧି ଜଳର ସୁବିଧା ନାହିଁ ।

---

## ମହିମା ଗାଦି ଓ କପିଳାସ

କପିଳାସ ପର୍ବତରେ ଦଣ୍ଡାୟମାନ ହେଲେ ଉତ୍ତରରେ ବ୍ରାହ୍ମଣୀ ନଦୀର ମନୋହର ଦୃଶ୍ୟ ଦେଖାଯାଏ । ଏହିଠାରୁ ମହିମା ଧର୍ମର ପ୍ରଧାନ ମନ୍ଦିର ଓ ମହିମା ଧର୍ମପୀଠ ଯୋରନ୍ଦା ଦୃଷ୍ଟିପଥାରୂଢ଼ ହୁଏ । ମହିମା ଧର୍ମ ସହିତ କପିଳାସ କ୍ଷେତ୍ରର ସମ୍ପର୍କ ଅଛି । କାରଣ ଏହି ଧର୍ମର ପ୍ରତିପାଦକ ମହାତ୍ମା କପିଳାସରେ ଦୀର୍ଘ ୨୪ ବର୍ଷ ରହି ତପଶ୍ଚର୍ଯ୍ୟା କରିଥିଲେ । ସେ କେଉଁଠାରେ ବସବାସ କରୁଥିଲେ ଅଦ୍ୟାପି ତାହାର କୌଣସି ସଙ୍କେତ ନାହିଁ । ମାତ୍ର ଏହା ସ୍ୱତଃସିଦ୍ଧ ଯେ ଢେଙ୍କାନାଳର ସ୍ୱର୍ଗୀୟ ମହାରାଜା ଭଗୀରଥ ମହେନ୍ଦ୍ର ବାହାଦୁର ଉକ୍ତ ସାଧକଙ୍କ ପାଇଁ ୧୨ ବର୍ଷ କାଳ ପ୍ରତ୍ୟହ ଦୁଗ୍ଧ ଏବଂ ଆଉ ୧୨ ବର୍ଷ କାଳ ପ୍ରତ୍ୟହ ଫଳ ଯୋଗାଇ ଦେବାର ବ୍ୟବସ୍ଥା କରିଥିଲେ । ଉକ୍ତ ସାଧକ ସତ୍ୟ ଧର୍ମରେ ଅନୁପ୍ରାଣିତ ହୋଇ କଠୋର ତପଶ୍ଚର୍ଯ୍ୟା କରିଥିଲେ ବୋଲି ତାଙ୍କର ଶିଷ୍ୟ ପରମ୍ପରା କ୍ରମେ ଶୁଣାଯାଏ । ସେ ସିଦ୍ଧି ଲାଭ କରିଥିଲେ । କେହି କେହି କହନ୍ତି ସେ ଶ୍ରୀମଦ୍ ଭାଗବତ ବର୍ଣ୍ଣିତ ଅଷ୍ଟାଦଶ ସିଦ୍ଧି ମଧ୍ୟରୁ କେତେକ ସାଧନ କରି କୃତକାର୍ଯ୍ୟ ହୋଇଥିଲେ ।

*

କପିଳାସରୁ ତପସ୍ୟା ଶେଷ କରି ସେ ଢେଙ୍କାନାଳର କାମାକ୍ଷାନଗର, ତାଳଚେର, ପାଲଲହଡ଼ା ପ୍ରଭୃତି ଅଞ୍ଚଳରେ ପରିଭ୍ରମଣ ପୂର୍ବକ ବହୁ ଲୋକଙ୍କୁ ତାଙ୍କର ନୂତନ ଧର୍ମରେ ଦୀକ୍ଷିତ କରାଇଥିଲେ । ତାଙ୍କର ଶିଷ୍ୟମାନଙ୍କ ମଧ୍ୟରେ ଥିଲେ ଅଧିକ ସଂଖ୍ୟକ ଚଷା, ଆଦିବାସୀ ଓ ହରିଜନ ଶ୍ରେଣୀର । ସେମାନେ ପ୍ରାୟ ଅଶିକ୍ଷିତ ଓ ନିରକ୍ଷର ଥିଲେ । ସାଧୁଙ୍କ ସମ୍ପର୍କରେ ସେମାନେ କେତେକ ସଦାଚାର ଶିକ୍ଷା କରିଥିଲେ । ସେମାନେ ପ୍ରଚ୍ଛନ୍ନ ବୌଦ୍ଧ ବୋଲି କେହି କେହି କହିଥା'ନ୍ତି । ଜାତି ଧର୍ମ ନିର୍ବିଶେଷରେ ସେ ସମସ୍ତଙ୍କୁ ଦୀକ୍ଷା ଦେଇଥିଲେ । ନିଜେ ପ୍ରଭାତରୁ ସ୍ନାନ ଶେଷ କରି ସୂର୍ଯ୍ୟ ଉଦିତ ହେବାମାତ୍ରେ ସୂର୍ଯ୍ୟ ନମସ୍କାର କରୁଥିଲେ । ଗୈରିକ ବସ୍ତ୍ର ପରିଧାନ, ପ୍ରଭାତରୁ ସ୍ନାନ, ଉଦୟ ଓ ଅସ୍ତ ସମୟରେ ସୂର୍ଯ୍ୟ ନମସ୍କାର ଓ ରାତି ଭୋଜନ ନିଷିଦ୍ଧ — ଏଇ କେତୋଟି ସଦାଚାର ସେମାନେ ପାଳନ କଲେ । କୁମ୍ଭି ଗଛର ବକଳ ପରିଧାନ କରିବା, ଗୋଟିଏ ଘରେ ଏକ ରାତିରୁ ଅଧିକ ନ ରହିବା ଏବଂ ଗ୍ରାମରୁ ଗ୍ରାମାନ୍ତର ପର୍ଯ୍ୟଟନ କରିବା ଥିଲା ସନ୍ୟାସୀମାନଙ୍କର ଧର୍ମ । ସେମାନେ ହିନ୍ଦୁ ଦେବଦେବୀ ପୂଜା ନ କରି ବରଂ ତାର ବିରୋଧ କରୁଥିଲେ । ଜାତି ଧର୍ମ ପ୍ରତି ତାଙ୍କର ଆସ୍ଥା ନ ଥିଲା । ଏସବୁ କାରଣରୁ ସେମାନେ ବ୍ରାହ୍ମଣ୍ୟ ଧର୍ମର ବିରୋଧୀ ବୋଲି ଗଣିତ ହେଲେ । ଏଣୁ ଧର୍ମାଧିକରଣ ରାଜା ତାଙ୍କ ପ୍ରତି ସମୁଚିତ ସମ୍ମାନ ଦେଇ ପାରିଲେ ନାହିଁ । ସେମାନେ ବ୍ରାହ୍ମଣ ଓ ରାଜା ଏମାନଙ୍କ ଘରେ ଭିକ୍ଷା ଗ୍ରହଣ କରିବେ ନାହିଁ ବୋଲି ନୀତି ପ୍ରଚାର କଲେ । ସେ ଯାହାହେଉ, ଏହି ସହଜ ସରଳ ଧର୍ମ କ୍ରମେ ଉତ୍କଳର ପୁରପଲ୍ଲୀରେ ବ୍ୟାପିବାକୁ ଲାଗିଲା । ମାତ୍ର ଶିକ୍ଷିତ ଆର୍ଯ୍ୟମାନେ ଏହାପ୍ରତି ବୀତଶ୍ରଦ୍ଧ ହେଲେ । ତୁଳସୀର ନିନ୍ଦା, ଶ୍ରୀରାମ, କୃଷ୍ଣ ଓ ଶିବଙ୍କ ପ୍ରତି ଅନାସ୍ଥା ହେତୁ ସେମାନେ ଗୋଟିଏ ସ୍ୱତନ୍ତ୍ର ଧର୍ମମାର୍ଗ ସୃଷ୍ଟି କଲେ । ମହିମା ଧର୍ମାବଲମ୍ବୀମାନେ ଭଗବତ୍ ଗୀତା ଓ ଶ୍ରୀମଦ୍ ଭାଗବତ ମହାପୁରାଣରୁ କେତେକ ପଂକ୍ତି ବ୍ୟବହାର କରିଥାନ୍ତି । ଉତ୍କଳରେ ପ୍ରସିଦ୍ଧ ଭୀମ ଭୋଇଙ୍କ ଭଜନ ସେମାନଙ୍କର ପ୍ରଧାନ ଅବଲମ୍ବନ ଓ ପ୍ରିୟ । ଉକ୍ତ ମହିମାଧର୍ମ ପ୍ରତିପାଦକଙ୍କୁ ତାଙ୍କର ଏବର ଧର୍ମାବଲମ୍ବୀମାନେ ଶୂନ୍ୟ ପୁରୁଷ ସ୍ୱୟଂ ଭଗବାନ ବୋଲି ମତବ୍ୟକ୍ତ କରୁଅଛନ୍ତି । ମହିମା ଧର୍ମର ଖ୍ୟାତନାମା ବିଶ୍ୱନାଥ ବାବା ସତ୍ୟ ମହିମା ଧର୍ମ ଓ ମହିମା ଧର୍ମର ପ୍ରତିପାଦକ ପ୍ରଭୃତି ଅନେକଗୁଡ଼ିଏ ଗ୍ରନ୍ଥ ଲେଖି ପ୍ରକାଶ କରିଅଛନ୍ତି । ଯେ ଯାହାହେଉ, ସେମାନେ ଆର୍ଯ୍ୟମାନଙ୍କର ବର୍ଣ୍ଣାଶ୍ରମ ଆଚାରର ବିରୋଧ କରୁଥିବାରୁ ଏବଂ ହିନ୍ଦୁ ଦେବଦେବୀଙ୍କର ପୂଜା ପ୍ରତି ଅନାଦର ପ୍ରଦର୍ଶନ କରୁଥିବାରୁ ଆର୍ଯ୍ୟ ସମାଜରେ ବିଶେଷ ଆଦୃତ ହୋଇପାରି ନାହାନ୍ତି ।

## ବାଲଙ୍କା ଗଡ଼

କପିଳାସରେ ଗୋଟିଏ ପ୍ରାଚୀନ ଦୁର୍ଗର ଭଗ୍ନାବଶେଷ ଦେଖାଯାଏ । ପରିଖା ଓ ପଥର କାନ୍ଥର କେତେକାଂଶ ମଧ୍ୟରେ ଗୋଟିଏ ଜୀର୍ଣ୍ଣ କୂପ ମଧ୍ୟ ଅଛି । ପରିଖାଟି ଜଳଶୂନ୍ୟ । ପ୍ରାଚୀର ଓ ପଥରଗୁଡ଼ିକ ସ୍ଥାନେ ସ୍ଥାନେ ଗଦା ହୋଇ ପଡ଼ିଅଛି । ଏହି ଦୁର୍ଗ ହରିସିଂହ ବିଦ୍ୟାଧରଙ୍କ କେହି ଜଣେ ବଂଶଧର ନିର୍ମାଣ କରିଥିବାର ଅନୁମାନ କରାଯାଏ । ଖ୍ରୀ: ୧୭୮୦ ମସିହାରେ ଯେଉଁବେଳେ ମରହଟ୍ଟାମାନଙ୍କ ସହିତ ଢେଙ୍କାନାଳର ପ୍ରବଳ ପ୍ରତାପୀ ମହାରାଜା ତ୍ରିଲୋଚନ ମହୀନ୍ଦ୍ର ବାହାଦୁରଙ୍କର ଯୁଦ୍ଧ ଚାଲିଥିଲା ସେତେବେଳେ ଆତ୍ମଗୋପନ ପାଇଁ ଢେଙ୍କାନାଳ ଦୁର୍ଗର ମହିଳାମାନେ ଏହି କପିଳାସ ଦୂର୍ଗକୁ ସ୍ଥାନାନ୍ତରିତ ହୋଇଥିଲେ ।

କେହି କେହି ଏହାକୁ ବାଲଙ୍କାଗଡ଼ ବୋଲି କହିଥାନ୍ତି । ଏହା ନିତାନ୍ତ କପୋଳକଳ୍ପିତ । ଆମର ସାରଳାଦାସଙ୍କ ମହାଭାରତରେ ବହୁ କପୋଳ-କଳ୍ପିତ ଘଟଣାମାନ ବର୍ଣ୍ଣନା କରାଯାଇଅଛି । ଲଙ୍କାପରି ବାଲଙ୍କା ନାମକ ଗୋଟିଏ ରାଜ୍ୟ ଥିଲା । ତାହାର ରାଜା ଅସୁର ଓ ଅତ୍ୟନ୍ତ ଦୁର୍ଦ୍ଧର୍ଷ ଥିଲା । ରାମଚନ୍ଦ୍ର ତାକୁ ସଂହାର କରିଥିଲେ । ସେହି ଅସୁର ରାଜା ଘନ ଅରଣ୍ୟାନି ମଧ୍ୟରେ ଦୁର୍ଗ ନିର୍ମାଣ କରି ଶିବଙ୍କର ଉପାସନା ଦ୍ୱାରା ପ୍ରବଳ ପରାକ୍ରାନ୍ତ ହୋଇ ନିକଟବର୍ତ୍ତୀ ଗ୍ରାମ-ମାନଙ୍କରେ ଅତ୍ୟାଚାର କରୁଥିଲା । ଏହାର ବିନାଶ ନିମିତ୍ତ ସୀତା ଦେବୀ ଶ୍ରୀରାମଚନ୍ଦ୍ରଙ୍କୁ ଅନୁରୋଧ କରିଥିଲେ । ବାଲଙ୍କା ରାମାୟଣ ବୋଲି ଗୋଟିଏ ପୁସ୍ତକ ମଧ୍ୟ ପ୍ରକାଶିତ ହୋଇଅଛି । ଏହା ଯେପରି ଅଦ୍ଭୁତ ସେହିପରି ଅବାନ୍ତର ଘଟଣାବଳୀରେ ପୂର୍ଣ୍ଣ ।

ସୋନପୁର ଇତିହାସରୁ ଜଣାଯାଏ ଯେ, ସେଠାରେ ବନକେଇ ବା ବାଲଙ୍କେଶ୍ୱରୀ ଦେବୀ ଅଛନ୍ତି । ସୋନପୁରକୁ କେହି କେହି ପଶ୍ଚିମ ଲଙ୍କା ଆଖ୍ୟା ମଧ୍ୟ ଦେଇଥାନ୍ତି । ପ୍ରସିଦ୍ଧ ସାତକୋଶିଆ ଗଣ୍ଡର ଶେଷ ପଶ୍ଚିମ ସୀମାରେ ମହାନଦୀର ଉତ୍ତର ତୀରରେ ବନକେଇ ବା ବାଲଙ୍କେଶ୍ୱରୀଙ୍କର ନାବିକ-ଅର୍ଚ୍ଚିତା ଦେବୀ ମୂର୍ତ୍ତି ବିଦ୍ୟମାନ । ରାବଣ ପରି ଦୁର୍ବୃତ୍ତ ଓ ଦୁର୍ଦ୍ଧର୍ଷ ଦୈତ୍ୟ ପରି ଅନାର୍ଯ୍ୟ ରାଜାମାନେ ତତ୍କାଳୋଚିତ ଗଡ଼ମାନ ନିର୍ମାଣ କରି ବସବାସ କରୁଥିବା ସୁନିଶ୍ଚିତ । ଆର୍ଯ୍ୟ ପ୍ରଭାବରେ ଏମାନେ ପରାଜିତ ଓ ବିତାଡ଼ିତ ହୋଇଥିଲେ । ସେମାନଙ୍କର ପୂଜିତ ଦେବତା ଏବେ ମଧ୍ୟ ଆର୍ଯ୍ୟ ସଂସ୍କୃତିର ଅନ୍ତର୍ଭୁକ୍ତ

ହୋଇଛନ୍ତି । ଢେଙ୍କାନାଳର ଉତ୍ତରାଞ୍ଚଳରେ ଘୋର ଅରଣ୍ୟ ସଙ୍କୁଳ ଅରଣ୍ୟ ମଧ୍ୟରେ ସ୍ଥାନେ ସ୍ଥାନେ ଗୋଟିଏ ଗୋଟିଏ ପଲ୍ଲୀଗ୍ରାମରେ ଥିବା ଭଗ୍ନ ଜରାଜୀର୍ଣ୍ଣ ମଣ୍ଡପ ଉପରେ ଥିବା ପାର୍ଶ୍ୱ ଦେବତାଟିଏ ବା ସିଂହଦ୍ୱାରର ସିଂହମୂର୍ତ୍ତି ହିଁ ବାଘ ବାଘୁଣୀ ଠାକୁରାଣୀ ବୋଲି ପରିଚିତ ଓ ପୂଜିତ ହୋଇଥିବାର ଦେଖାଯାଏ । ସେ ଅଞ୍ଚଳରେ ଆଦିବାସୀମାନଙ୍କର ଏପରି ବିଶ୍ୱାସ ଯେ ବାଘ ବାଘୁଣୀ ଠାକୁରାଣୀଙ୍କୁ ଟିକିଏ ଅବମାନନା କଲେ ନିଶ୍ଚୟ ବାଘ ଖାଇଯିବ । ଏହାର ଉଦାହରଣ ମଧ୍ୟ ସେମାନେ ଦେଇ ଅଛନ୍ତି । ଏ ସବୁ ବିଶ୍ୱାସ । ଢେଙ୍କାନାଳରେ ବହୁ ପ୍ରାଚୀନ କ୍ଷୁଦ୍ର ଦୁର୍ଗ ଥିଲା । ସେଥିରେ ଅବଶ୍ୟ କୌଣସି ମନ୍ଦିର ବା ମଣ୍ଡପରେ ଦେବତା ପୂଜିତ ହେଉଥିଲେ ।

ପୂର୍ବେ ଲିଖିତ ହୋଇଥିବା କରମୂଳ ପାଟଣାର ତତ୍‌କାଳୀନ ରାଜାଙ୍କର ଅଧୀନ ଥିଲା କପିଳାସ ଓ ତାର ନିକଟବର୍ତ୍ତୀ ଗ୍ରାମାଞ୍ଚଳ । ସେତେବେଳେ ଢେଙ୍କାନାଳ ଗଡ଼ର ଆଦିମ ନରପତି ଶବର ଢେଙ୍କାକୁ ପରାସ୍ତ ଓ ନିହତ କରି ବେଣାକିଆର ଭଞ୍ଜରାଜାମାନେ ଢେଙ୍କାନାଳ ରାଜ୍ୟ ଶାସନ କରୁଥିଲେ । କରମୂଳ ଅଧିପତି ଭଞ୍ଜରାଜାମାନଙ୍କୁ ଆକ୍ରମଣ କରିବାର ଆଶଙ୍କା ଥିଲା । ସେମାନେ ମଧ୍ୟ ଭଞ୍ଜରାଜାଙ୍କ ଦ୍ୱାରା ଆକ୍ରମଣର ଆଶଙ୍କା କରୁଥିଲେ । ତେଣୁ କରମୂଳର ରାଜା କପିଳାସ ଉପରେ ଦୁର୍ଗ ନିର୍ମାଣ କରି ଆପଣାକୁ ସୁରକ୍ଷିତ କରିଥିବା ମଧ୍ୟ ସମ୍ଭବ । ଏହି ଦୁର୍ଗକୁ ବିଲଙ୍କାଗଡ଼ ନାମ ଦିଆଯାଇଅଛି ।

ବେଣାକିଆର ଭଞ୍ଜରାଜାମାନେ ଢେଙ୍କାନାଳର ପଶ୍ଚିମାଞ୍ଚଳ ଅଧିକାର କରି ରହିଥିଲେ । ବେଣାକିଆ ତାଙ୍କର ଦୁର୍ଗ ଥିଲା । ଏବେ ଦୁର୍ଗର ଭଗ୍ନାବଶେଷ ଅଛି ଏବଂ ଭଞ୍ଜବଂଶୀୟ ରାଜାମାନଙ୍କର ବଂଶଧର ସ୍ଥାନେ ସ୍ଥାନେ ବାସ କରୁଛନ୍ତି । ହରିସିଂହ ବିଦ୍ୟାଧର ପୁରୀରାଜାଙ୍କଠାରୁ କରମୂଳପାଟଣା ( ତତ୍‌କାଳୀନ ସମୃଦ୍ଧିଶାଳୀ ) ଅଞ୍ଚଳ ଦାନ ସ୍ୱରୂପ ପାଇଥିଲେ । ଏହି ବଂଶର କ୍ଷତ୍ରିୟ ରାଜା କ୍ରମେ ଢେଙ୍କାନାଳରୁ ଭଞ୍ଜରାଜାମାନଙ୍କୁ ବିତାଡ଼ିତ କରି ରାଜ୍ୟ ଅଧିକାର କରିଥିଲେ । ଢେଙ୍କାନାଳରେ ପ୍ରଚଳିତ 'ଭଞ୍ଜବୋଲି', 'ବଳଭଦ୍ରବୋଲି' ପ୍ରଭୃତି ତତ୍‌କାଳୀନ ସ୍ଥାନୀୟ କବିମାନଙ୍କ ଲିଖିତ ପୁସ୍ତିକାରୁ ଏ ସମ୍ବନ୍ଧରେ ଆଭାସ ମିଳେ । ଢେଙ୍କାନାଳ ଅଧିକାର କରିବା ପରେ ଉକ୍ତ ରାଜାମାନେ କପିଳାସରେ ମନ୍ଦିରାଦିର ସଂସ୍କାର କରାଇଥିଲେ । ରାଜା ସୁରପ୍ରତାପଙ୍କ ରାଜତ୍ୱରେ କପିଳାସ

ଉପରକୁ ସଡ଼କରାସ୍ତା ଓ ଉପରେ ରହିବା ପାଇଁ ସୁରମ୍ୟ ଅଟ୍ଟାଳିକା ନିର୍ମିତ ହୋଇଥିଲି ଏବଂ ତାଙ୍କର ମାତା ଅନ୍ନପୂର୍ଣ୍ଣା ଦେବୀଙ୍କ ଦ୍ୱାରା ନାରାୟଣ ମନ୍ଦିର ନିର୍ମିତ ହୋଇଥିଲା । ଏସବୁ କଥା ସଂକ୍ଷେପରେ ଆଗରୁ କୁହାଯାଇଅଛି ।

## ବର୍ତ୍ତମାନ କପିଳାସରେ ଉନ୍ନତି ମୂଳକ ଯୋଜନା

ସମଗ୍ର କପିଳାସର ସଂରକ୍ଷିତ ପର୍ବତମାଳା ପ୍ରାୟ ୧୦୫୦୦ ଏକର ପରିମିତ ଅରଣ୍ୟାନିକୁ ବନ୍ଦୋବସ୍ତରେ "ହର ଉଦ୍ୟାନ" ନାମରେ ନାମିତ କରାଯାଇଛି । ଏହା ଦେବୋତ୍ତର ବିଭାଗକୁ ଅଣାଯାଇଛି ଏବଂ ଏଥିପାଇଁ ଜଙ୍ଗଲ ବିଭାଗଠାରୁ ସାତଲକ୍ଷ ଟଙ୍କା ମିଳିଛି । ଏହି ଟଙ୍କାରେ ଶ୍ରୀ ଚନ୍ଦ୍ରଶେଖରଙ୍କର ବିଜେସ୍ଥଳରେ କେତେକ ଉନ୍ନତି କରାଯାଇଛି ।

ପର୍ବତ ପାଦଦେଶରେ ଅରଣ୍ୟ ବିଭାଗ ପକ୍ଷରୁ ଗୋଟିଏ ସୁରମ୍ୟ ଅରଣ୍ୟ ଓ ବନ୍ୟପଶୁ ସଂରକ୍ଷଣ ପାଇଁ ବ୍ୟବସ୍ଥା କରାଯାଇଅଛି । ଏହା କ୍ରମେ ଗୋଟିଏ ପ୍ରାକୃତିକ ଚିଡ଼ିଆଖାନାରେ ପରିଣତ ହେବାର ପରିକଳ୍ପନା ଅଛି ।

ପର୍ବତ ଉପରକୁ ବିଦ୍ୟୁତ୍ ଆଲୋକ ଯିବାର ବ୍ୟବସ୍ଥା ଏକ ବିଶିଷ୍ଟ ଉଦ୍ୟମ । ଏହାକୁ ଏକ ଟୁରିଷ୍ଟ ସେଣ୍ଟରରେ ପରିଣତ କରିବାର କଳ୍ପନା ପ୍ରଶଂସନୀୟ । ପର୍ବତର ନିମ୍ନ ଦେଶରେ ୧ମ ମଧ୍ୟ ଭାଗରେ ଗୋଟିଏ ଗୋଟିଏ ଧର୍ମଶାଳା ଓ ଆଶ୍ରମ ନିର୍ମାଣର ଯୋଜନା ଅଛି । ଏହା ଯାତ୍ରୀମାନଙ୍କ ପକ୍ଷରେ ବିଶେଷ ସହାୟକ ହେବ ।

ପ୍ରାୟ ପାଞ୍ଚବର୍ଷ ପୂର୍ବେ ଶ୍ରୀ ଶିଖରେଶ୍ୱରଙ୍କର ପତିତ ତଏଳା ଓ ଅକର୍ମଣ୍ୟ ଜଙ୍ଗଲ ଜମିରେ ( ଆଠ ଶହ ଏକର ) ମୃତ୍ତିକା ସଂରକ୍ଷଣ ବିଭାଗ ଜରିଆରେ କାଜୁ ବାଦାମ ବଗିଚା ଆରମ୍ଭ କରାଯାଇଛି । ଦୁଇବର୍ଷ ହେଲା କାଜୁ ବାଦାମ ଆମଦାନୀ ହେଲଣି । ପୁଣି ଆଉ ଚାରି ଶହ ଏକର ଜମିରେ କାଜୁ ବାଦାମ ଲଗାଇବାର ଯୋଜନା ଅଛି । ଆସନ୍ତା ୨୫ ବର୍ଷ ମଧ୍ୟରେ ଦୁଇକୋଟି ଟଙ୍କା ମିଳିବାର ଅଟକଳ କରାଯାଇଅଛି ।

ଏଥିରୁ ବୁଝାଯାଏ ଯେ, ଠାକୁରଙ୍କର ବହୁ ପରିମାଣର ଜମିଜମା ଓ ସମ୍ପତ୍ତି ଅଛି । ଭବିଷ୍ୟତରେ ସୁପରିଚାଳନା ଦ୍ୱାରା ବହୁ ଅର୍ଥ ଉପାର୍ଜିତ ହେବ ଏବଂ ଏହାର ସୁବନ୍ଦୋବସ୍ତରେ ଠାକୁରଙ୍କର ମନ୍ଦିରକାନ୍ତର ନିଶ୍ଚୟ ଉନ୍ନତି ଘଟିବ । କ୍ରମେ ପୀଠସ୍ଥଳର ସୌନ୍ଦର୍ଯ୍ୟ ବୃଦ୍ଧି ହେବ । ଅଗଣିତ ଯାତ୍ରୀ, ଭକ୍ତ ଓ ସାଧୁସନ୍ଥ ସହଜରେ ଶ୍ରୀ ଚନ୍ଦ୍ରଶେଖରଙ୍କୁ ଦର୍ଶନ କରି କୃତାର୍ଥ ହେବେ । ଏହା ଉନ୍ନତି ପଥରେ ଉତ୍ତରୋତ୍ତର ଗତି କଲେ ସମଗ୍ର ଭାରତରେ ଗୋଟିଏ ଦର୍ଶନୀୟ ତୀର୍ଥସ୍ଥାନ ହେବ ।

ଓଁ ନମଃ ଶିବାୟ ।



# ଚନ୍ଦ୍ରଶେଖରାଷ୍ଟକମ୍

ଚନ୍ଦ୍ରଶେଖର ଚନ୍ଦ୍ରଶେଖର ଚନ୍ଦ୍ରଶେଖର ପାହିମାଂ
ଚନ୍ଦ୍ରଶେଖର ଚନ୍ଦ୍ରଶେଖର ଚନ୍ଦ୍ରଶେଖର ରକ୍ଷମାମ୍ ॥
ରତ୍ନସାନୁଶରାସନଂ ରଜତାଦ୍ରି ଶୃଙ୍ଗ ନିକେତନଂ
ଶିଞ୍ଜିନୀକୃତ ପନ୍ନଗେଶ୍ୱର ମଚ୍ୟୁତାନନ ସାୟକମ୍ ।
କ୍ଷିପ୍ର ଦଗ୍‌ଧପୁରତ୍ରୟଂ ତ୍ରିଦିବାଳୟୈରଭିବନ୍ଦିତଂ
ଚନ୍ଦ୍ରଶେଖର ମାଶ୍ରୟେ ମମ କିଂ କରିଷ୍ୟତି ବୈ ଯମଃ ॥
ପଞ୍ଚପାଦପ ପୁଷ୍ପଗନ୍ଧ ପଦାମ୍ବୁଜ ଦ୍ୱୟ ଶୋଭିତଂ
ଭାଲ ଲୋଚନ ଜାତ ପାବକ ଦଗ୍‌ଧ ମନ୍ମଥ ବିଗ୍ରହମ୍ ।
ଭସ୍ମଦିଗ୍‌ଧ କଳେବରଂ ଭବନାଶନଂ ଭବମବ୍ୟୟଂ
ଚନ୍ଦ୍ରଶେଖର ମାଶ୍ରୟେ ମମ କିଂ କରିଷ୍ୟତି ବୈ ଯମଃ ॥
ମତ୍ତବାରଣ ମୁଖ୍ୟଚର୍ମକୃତୋତ୍ତରୀୟ ମନୋହରଂ
ପଙ୍କଜାସନ ପଦ୍ମଲୋଚନ ପୂଜିତାଙ୍ଘ୍ରି ସରୋରୁହମ୍ ।
ଦେବସିନ୍ଧୁ ତରଙ୍ଗ ଶୀକରସିକ୍ତ ଶୁଭ୍ରଜଟାଧରଂ
ଚନ୍ଦ୍ରଶେଖର ଚନ୍ଦ୍ରଶେଖର ଚନ୍ଦ୍ରଶେଖର ରକ୍ଷମାମ୍ ॥
ଯକ୍ଷରାଜସଖଂ ଭଗାକ୍ଷ ହରଂ ଭୁଜଙ୍ଗ ବିଭୂଷଣଂ
ଶୈଳରାଜସୁତା ପରିଷ୍କୃତ ଚାରୁ ବାମ କଳେବରମ୍
କ୍ଷ୍ୱେଡନୀଳଗଳଂ ପରଶ୍ୱଧଧାରିଣଂ ମୃଗଧାରିଣଂ
ଚନ୍ଦ୍ରଶେଖର ଚନ୍ଦ୍ରଶେଖର ଚନ୍ଦ୍ରଶେଖର ରକ୍ଷମାମ୍ ॥
କୁଣ୍ଡଳୀକୃତ କୁଣ୍ଡଳେଶ୍ୱର କୁଣ୍ଡଳଂ ବୃଷବାହନଂ
ନାରଦାଦିମୁନୀଶ୍ୱର ସ୍ତୁତ ବୈଭବଂ ଭୁବନେଶ୍ୱରମ୍ ।
ଅନ୍ଧକାନ୍ଧକମାଶ୍ରିତାମର ପାଦପଂ ଶମନାନ୍ତକଂ
ଚନ୍ଦ୍ରଶେଖର ଚନ୍ଦ୍ରଶେଖର ଚନ୍ଦ୍ରଶେଖର ରକ୍ଷମାମ୍ ॥
ଭେଷଜଂ ଭବରୋଗିଣାମଖିଳାପଦାମପହାରିଣଂ
ଦକ୍ଷଯଜ୍ଞ ବିନାଶନଂ ତ୍ରିଗୁଣାତ୍ମକଂ ତ୍ରିବିଲୋଚନଂ ।
ଭୁକ୍ତିମୁକ୍ତି ଫଳପ୍ରଦଂ ସକଳାଘ ସଂଘ ନିବର୍ହଣଂ
ଚନ୍ଦ୍ରଶେଖର ଚନ୍ଦ୍ରଶେଖର ଚନ୍ଦ୍ରଶେଖର ରକ୍ଷମାମ୍ ॥

ଭକ୍ତବତ୍ସଳମର୍ଚ୍ଚିତଂ ନିଧିମକ୍ଷୟଂ ହରିଦମ୍ବରଂ
ସର୍ବଭୂତପତିଂ ପରାତ୍ପରମପ୍ରମେୟ ମନୁତ୍ତମମ୍ ।
ସୋମବାରିଦଭୂ ହୁତାଶନ ସୋମପାନିଳଖେ । ଲୁଛିଂ
ଚନ୍ଦ୍ରଶେଖର ଚନ୍ଦ୍ରଶେଖର ଚନ୍ଦ୍ରଶେଖର ରକ୍ଷମାମ୍ ॥
ବିଶ୍ୱସୃଷ୍ଟି ବିଧାୟିନଂ ପୁନରେବ ପାଳନ ତତ୍ପର
ସଂହରନ୍ତମପି ପ୍ରପଞ୍ଚମଶେଷ ଲୋକନିବାସିନମ୍ ।
କ୍ରୀଡୟନ୍ତମହର୍ନିଶଂ ଗଣନାଥ ଯୂଥ ସମନ୍ୱିତଂ
ଚନ୍ଦ୍ରଶେଖରଂ ଚନ୍ଦ୍ରଶେଖର ଚନ୍ଦ୍ରଶେଖର ରକ୍ଷମାମ୍ ॥
ମୃତ୍ୟୁଭୀତ ମୃକଣ୍ଡୁ ସୂନୁ କୃତସ୍ତବଂ ଶିବ ସନ୍ନିଧୌ
ଯତ୍ରକୁତ୍ରଚ ଯ ପଠେନ୍ନହି ତସ୍ୟ ମୃତ୍ୟୁଭୟଂ ଭବେତ୍
ପୂର୍ଣ୍ଣମାୟୁରରୋଗିତା ମଖିଳାର୍ଥସମ୍ପଦା ମାଦରଂ
ଚନ୍ଦ୍ରଶେଖର ଏବତସ୍ୟ ଦଦାତି ମୁକ୍ତିମଯତ୍ନତଃ ॥

ଇତିଶ୍ରୀ ଚନ୍ଦ୍ରଶେଖରାଷ୍ଟକସ୍ତୋତ୍ରଂ ସମ୍ପୂର୍ଣ୍ଣମ୍ ।

---

# ଶିବପଞ୍ଚାକ୍ଷର ସ୍ତୋତ୍ରମ୍

ନାଗେନ୍ଦ୍ରହାରାୟ ତ୍ରିଲୋଚନାୟ, ଭସ୍ମାଙ୍ଗରାଗାୟ ମହେଶ୍ୱରାୟ
ନିତ୍ୟାୟ ଶୁଦ୍ଧାୟ ଦିଗମ୍ବରାୟ, ତସ୍ମୈ 'ନ'କାରାୟ ନମଃ ଶିବାୟ । ୧ ।
ମନ୍ଦାକିନୀ ସଲିଳ ଚନ୍ଦନଚର୍ଚ୍ଚିତାୟ, ନନ୍ଦୀଶ୍ୱର ପ୍ରମଥନାଥ ମହେଶ୍ୱରାୟ
ମନ୍ଦାରପୁଷ୍ପ ବହୁ ପୁଷ୍ପ ସୁପୂଜିତାୟ, ତସ୍ମୈ 'ମ'କାରାୟ ନମଃ ଶିବାୟ ।୨।
ଶିବାୟ ଗୌରୀ ବଦନାବ୍ଜବୃନ୍ଦ-ସୂର୍ଯ୍ୟାୟ ଦକ୍ଷାଧ୍ୱରନାଶକାୟ
ଶ୍ରୀନୀଳକଣ୍ଠାୟ ବୃଷଧ୍ୱଜାୟ, ତସ୍ମୈ 'ଶି'କାରାୟ ନମଃ ଶିବାୟ । ୩ ।
ବଶିଷ୍ଠକୁମ୍ଭୋଦ୍‌ଭବ ଗୌତମାର୍ଯ୍ୟ ମୁନୀନ୍ଦ୍ର-ଦେବାର୍ଚ୍ଚିତ ଶେଖରାୟ
ଚନ୍ଦ୍ରାର୍କ-ବୈଶ୍ୱାନର-ଲୋଚନାୟ, ତସ୍ମୈ 'ବ'କାରାୟ ନମଃ ଶିବାୟ । ୪ ।
ଯକ୍ଷସ୍ୱରୂପାୟ ଜଟାଧରାୟ, ପିନାକ ହସ୍ତାୟ ସନାତନାୟ
ଦିବ୍ୟାୟ-ଦେବାୟ-ଦିଗମ୍ବରାୟ, ତସ୍ମୈ 'ଯ'କାରାୟ ନମଃ ଶିବାୟ । ୫ ।
ପଞ୍ଚାକ୍ଷର ମିଦଂ ପୁଣ୍ୟଂ ଯଃ ପଠେଚ୍ଛିବ ସନ୍ନିଧୌ
ଶିବଲୋକ ମବାପ୍ନୋତି ଶିବେନ ସହ ମୋଦତେ ।

ଇତି ଶ୍ରୀ ମଚ୍ଛଙ୍କରାର୍ଯ୍ୟ ବିରଚିତଂ ଶିବ ପଞ୍ଚାକ୍ଷର ସ୍ତୋତ୍ରଂ ସମ୍ପୂର୍ଣ୍ଣମ୍ ।

---



ସମ୍ମୁଖ ଭାଗରେ :

ଶ୍ରୀଧର ସ୍ୱାମୀଙ୍କ ସମାଧି

ପୃଷ୍ଠଭୂମିରେ :

ଶ୍ରୀ ବୃଦ୍ଧେଶ୍ୱରଙ୍କ ମନ୍ଦିର

ଫଟୋ: ଫ୍ଲାଇଟ ଲେଫ୍ଟନାଣ୍ଟ :

ଶ୍ରୀ ବରଜାଶଙ୍କର ସିଂହଦେବ